ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୫ ବର୍ଷ, ଚତୁର୍ଥ ସଂଖ୍ୟା**
**ନଭେମ୍ବର, ୨୦୧୫**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
**ଡ. ଶୁଭେଂନ୍ଦ୍ରମୋହନ ଶ୍ରୀଚଂନ୍ଦନ ସିଂହ,**
**ଇଂ ପ୍ରଭାତ କୁମାର ନନ୍ଦ**

**ଗଳ୍ପ ଓ ଜୀବନୀ**



**କବିତା**



**ଭ୍ରମଣ କାହାଣୀ**



**ଜ୍ଞାନ-ବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ମଉଦା, ଭଦ୍ରକରୁ ବଂଶୀଧର ଖୁଣ୍ଟିଆ–** ଏ ପରିଣତ ବୟସରେ ସଂସାର ଦେଖିଲେ ଦୀର୍ଘ ବର୍ଷ ତଳେ ଉଚ୍ଚ ବିଦ୍ୟାଳୟରେ ପଢୁଥିବା କଥା ମୋର ମନେପଡ଼େ । ସେତେବେଳେ ମୋର କଅଁଳ ମନରେ 'ସଂସାର' ଯେଉଁ ପ୍ରଭାବ ପକାଇଥିଲା, ତା'ର ଫଳ ପରବର୍ତ୍ତୀ ଜୀବନରେ ପାଇଲି । ଆଜି ମୁଁ ପୂଜ୍ୟ ରାମକୃଷ୍ଣ ନନ୍ଦ ଓ 'ସଂସାର' ପାଖରେ ଋଣୀ ।

**ଟିଟିଲାଗଡ଼, ବଲାଙ୍ଗୀରରୁ ବୃନ୍ଦାବନ କୁମ୍ଭାର–**

ସଂସାରକୁ ଭଲ ପାଇ ହେଲି ଅନାଦର
ପ୍ରତି ପୃଷ୍ଠାରେ ତା' ଛବି କେତେ ମନୋହର ।
ସ୍କୁଲ ପିଲା ଆମ କେତେ ଆଦରରେ ପଢ଼ନ୍ତି
ନାନା ଛବି ଥାଏ ତହିଁ ହୋଇ ପଙ୍କ୍ତ ପଙ୍କ୍ତି ।
ନୀତିବାଣୀ ପୁଣି ଅନେକ କାହାଣୀ ତାହାର
ମନ କିଣି ନିଏ ସଦା ଆମ୍ଭମାନଙ୍କର ।
ସଂସାରରେ ସାର ଏହି ପ୍ରତିକା 'ସଂସାର'
ତାହାକୁ ମୁଁ ଛାଡୁନାହିଁ ପଢ଼ି ବାରମ୍ବାର ।
ଅନାଦର କରୁ ପଛେ ସେହି ମୋ ସଂସାର
ପୂରି ରହିଅଛି ତହିଁ ଜ୍ଞାନର ଭଣ୍ଡାର ।

**ଧର୍ମଶାଳାରୁ ନାରାୟଣ ଦତ୍ତ–** ଏ ମାସ ସଂସାର ମୋର ହସ୍ତଗତ ହେଲା । ରାମକୃଷ୍ଣ ନନ୍ଦଙ୍କ ପ୍ରତିଷ୍ଠିତ ଏ ପତ୍ରିକାଟି ଓଡ଼ିଶାର ଶ୍ରେଷ୍ଠ ଶିଶୁପତ୍ରିକା । ପିଲାଙ୍କ ଜାଣିବା, ଶିଖିବା ଓ ବୁଦ୍ଧି ବଢ଼ିବା ପାଇଁ ଏଥିରେ ଯେତେ ବିଭାଗ ରହିଛି, ତାହା ଅନ୍ୟ କେଉଁ ପତ୍ରିକାରେ ନାହିଁ ।

**ଜବାହର ନବୋଦୟ ବିଦ୍ୟାଳୟ, ବିକ୍ରମପୁର, ଅନୁଗୋଳରୁ ପ୍ରଶାନ୍ତ କୁମାର ପାଢ଼ୀ–** ଆମ ବିଦ୍ୟାଳୟ ପୁସ୍ତକାଗାରରେ ପିଲାଙ୍କ ଦ୍ୱାରା ଏହି ପତ୍ରିକାଟି ଆଦୃତ ହୋଇପାରିଛି । ବିଭିନ୍ନ ବିଭାଗରେ ଭରପୂର ଏହାର ପ୍ରତିଟି ପୃଷ୍ଠା ଅନନ୍ୟ ।

**ଚମ୍ପୁଆରୁ ରାସେଶ୍ୱର ମହାନ୍ତ–** ଏ ସଂଖ୍ୟା ଶବ୍ଦଧନ୍ଦାରେ ଏକାଧିକ ତ୍ରୁଟି ପରିଲକ୍ଷିତ ହେଲା ।

## ସଂସାର ଶବ୍ଦଧନ୍ଦାର ନିୟମାବଳୀ

୧. ସୂଚନାରେ ଥିବା ବନ୍ଧନୀ ମଧ୍ୟରେ ଶବ୍ଦର ଅକ୍ଷର ସଂଖ୍ୟା ଦିଆଯାଇଛି ।

୨. ଦିଆଯାଇଥିବା ଚିତ୍ରରେ ଖାଲି ଘରଗୁଡ଼ିକ ପୂରଣ କରି ପଠାନ୍ତୁ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସିବ ।

୩. ଯେଉଁମାନେ ଶବ୍ଦଧନ୍ଦା ପ୍ରସ୍ତୁତ କରି ପଠାଉଛନ୍ତି, ସେମାନେ ନିମ୍ନଲିଖିତ ନିୟମ ପ୍ରତି ଦୟାକରି ଦୃଷ୍ଟିଦେବେ ।

କ) 'ବାମରୁ ଡାହାଣ' ଧାଡ଼ିରେ ଅକ୍ଷର ବସାଉଥିଲାବେଳେ ପୁଣି ସେହି ଧାଡ଼ିରେ ସେହି ଗଢ଼ା ଶବ୍ଦଟିର ଶେଷ ଅକ୍ଷରକୁ ମିଶାଇ ଆଉ ଗୋଟିଏ ଶବ୍ଦ ଗଢ଼ନ୍ତୁ ନାହିଁ । ଉଦାହରଣ- ୧ । ସୁଦର୍ଶନ (୪), ୨ । ନରକ ।

ଖ) ଭୁଲ ବନାନ ଥିବା ଶବ୍ଦ ଗଢ଼ନ୍ତୁ ନାହିଁ ।

ଗ) ଏକପ୍ରକାର ଅର୍ଥ ବୁଝାଉଥିବା ଦୁଇଟି ଶବ୍ଦ ଗଢ଼ନ୍ତୁ ନାହିଁ ।

ଘ) ଅଧିକ କ୍ଲିଷ୍ଟ ଶବ୍ଦ ଓ ନାମବାଚକ ଶବ୍ଦ ଦିଅନ୍ତୁ ନାହିଁ ।

---

ସେପ୍ଟେମ୍ବର ମାସ ସଂସାରରେ ପ୍ରକାଶିତ 'ଭାରତର ଜାତୀୟ ଗ୍ରନ୍ଥ' ଶୀର୍ଷକ ଲେଖାକୁ ନେଇ କେତେକ ପାଠକ ମତ ପ୍ରକାଶ କରିଛନ୍ତି ଯେ ଆମ ସମ୍ବିଧାନ ଏ ପର୍ଯ୍ୟନ୍ତ ଆମର ଜାତୀୟ ଗ୍ରନ୍ଥ ଭାବେ ସ୍ୱୀକୃତ ହୋଇନାହିଁ । କେବଳ ଆଲୋଚନା ମଧ୍ୟରେ ତାହା ସୀମିତ ରହିଛି ।

---

**ଏ ମାସର ପ୍ରଚ୍ଛଦ--** ପୃଥିବୀର ସବୁଠାରୁ ଆଶ୍ଚର୍ଯ୍ୟଜନକ ଘଣ୍ଟା–ଏହି ଘଣ୍ଟାକୁ ଦେଖିଲେ ଯେ କେହି ଆଶ୍ଚର୍ଯ୍ୟ ହେବେ । ସେଥିପାଇଁ ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ଶହଶହ ପର୍ଯ୍ୟଟକ ଆସି ଏହାକୁ ଦେଖିବା ପାଇଁ ଏଠାରେ ଭିଡ଼ ଜମାଇଥା'ନ୍ତି । ଫଟୋ ଉଠାଇଥା'ନ୍ତି, ସ୍ତମ୍ଭୀଭୂତ ମଧ୍ୟ ହୋଇଥା'ନ୍ତି । ଚେକୋସ୍ଲୋଭାକିଆ ରାଜଧାନୀରେ ଥିବା ଏହି ଘଣ୍ଟାର ନାମ 'ପ୍ରେଗ୍ ଆଷ୍ଟ୍ରୋନୋମିକାଲ କ୍ଲକ୍' । ଏହା ୬୦୦ ବର୍ଷର ଲୁକ୍କାୟିତ କୀର୍ତ୍ତିକୁ ପ୍ରକାଶିତ କରିଛି । ଏବେ ମଧ୍ୟ ଏହାର ଘୂର୍ଣ୍ଣନ କୌଶଳ, ସମୟର ନିର୍ଭୁଲ ପରିପ୍ରକାଶ ସହ ଏଥିରେ ଥିବା ମୂର୍ତ୍ତି ଓ ଧର୍ମ ପ୍ରଚାରକମାନଙ୍କର ସମୂହ ଗତିଶୀଳତା ଦେଖିଲେ ଜଣାଯିବ ଯେ ଏଭଳି ଘଣ୍ଟା ପୃଥିବୀରେ ଆଉ କେଉଁଠି ନାହିଁ । ଏହା ମଧ୍ୟଯୁଗର ଏକ ବିସ୍ମୟ ଭାବେ ବିଚାର କରାଯାଏ ।

# କୁହୁକ ମୁକ୍ତି

ଶ୍ରୀ ସୁଭାସ ଚନ୍ଦ୍ର ମହାନ୍ତି

ସତ୍ୟଜିତ୍ ନାମରେ ଜଣେ ସୌଦାଗର । ଦରିଆର ଅକାତକାତ ପାଣିରେ ନାଆ ତା'ର ମେଲିଦିଏ । କେତେ ଦେଶରେ ବୁଲେ । ବେପାର ବଣିଜ କରେ । ଧନଦୌଲତ ନିଜ ଦେଶକୁ ବୋହିଆଣେ । ସେ ଏତେ ଧନୀ ଯେ ସୁନାଥାଳିରେ ଖାଇ କ୍ଷୀରରେ ହାତ ଧୁଏ । କେଉଁଥିରେ ବା ଈଶ୍ୱର ତାକୁ ଊଣା କରିଛନ୍ତି ? ହେଲେ ମନଲାଖି ଝିଅଟିଏ ମିଳି ନ ଥିବାରୁ ସେ ବିଭା ହୋଇ ନ ଥାଏ । ମନ ତା'ର ଧୀରେ ଧୀରେ ମରିଯାଏ ଦିନକୁ ଦିନ ।

ଦିନକର କଥା । ଅଗାଧ ସମୁଦ୍ର ଭିତରେ ନାଆ ତା'ର ଭାସି ଭାସି ଯାଉଥାଏ । ସମୁଦ୍ର ନୀଳତରଙ୍ଗ ଦୋଳିରେ ନାଆ ସହ ସତ୍ୟଜିତ୍ ମଧ୍ୟ ଝୁଲି ଝୁଲି ଯାଉଥାଏ । ପବନରେ ଫରଫର୍ ହୋଇ ଉଡୁଥାଏ, ନାଆର ପତାକା । ମଥାର କେଶ ଫୁର୍‌ଫୁର୍ ହୋଇ ଉଡୁଥାଏ । ମନଫୁଲାଣିଆ ଗୀତ ଗାଇ ଗାଇ ଚାହିଁଥାଏ ସୁନୀଳ ଆକାଶକୁ । ଦେଖୁଥାଏ ସନ୍ଧ୍ୟାକାଳର ମନୋରମ ଶୋଭା । ପଶ୍ଚିମ ଆକାଶରେ ସୂର୍ଯ୍ୟ ବୁଡ଼ି ଯାଉଥାଆନ୍ତି । ସାଧବବୋହୂର ନାଲି ଟୁକୁଟୁକୁ ଅଧର ପରି ପଶ୍ଚିମ ଆକାଶ ଲାଲ୍ ରଂଗ ଧରିଛି । ପୂର୍ବ ଆକାଶରେ ଚନ୍ଦ୍ର ଉଠିବାର ଉପକ୍ରମ କଲେଣି । ଏହି ସମୟରେ ସମୁଦ୍ର ଭିତରୁ ଗୋଟିଏ ମାଛ ଡେଇଁ ପଡ଼ିଲା ନାଆ ଭିତରକୁ । ସତ୍ୟଜିତ୍ ପାଦ ପାଖରେ ପଡ଼ି ଛଟପଟ ହେବାକୁ ଲାଗିଲା । ପାଣି ଭିତରକୁ ଯିବା ପାଇଁ ତାର ଅକଳନ ଚେଷ୍ଟା; କିନ୍ତୁ ଯିବାର ଉପାୟ ନାହିଁ ।

ମାଛଟି ନାଚି, ନାଚି, ଡେଇଁ ସତ୍ୟଜିତର ପାଦ ପାଖରେ ହାଲିଆ ହୋଇ ପଡ଼ିରହିଲା ।

ସତ୍ୟଜିତ ମନରେ ଅନେକ ଭାବନା........ ।

ମାଛଟି ପାଣିରେ ପହଁରି ଖେଳିଲା ବେଳେ ପ୍ରକୃତରେ ତା' ମନରେ କେତେ ଆନନ୍ଦ । ପାଣିରୁ ଉଠିଆସି ସେ କେତେ ବିକଳ ହେଉଛି ! ସତରେ ପରାଧୀନ ଅପେକ୍ଷା ମୁକ୍ତିର କି ଆନନ୍ଦ ! ମାଛର ଦୁଃଖ ନିଜର ହୃଦୟ ଭିତରେ ସେ ଅନୁଭବ କଲା । ହାତରେ ମାଛଟିକୁ ଧରି ସ୍ନେହରେ ଆଉଁସି ଦେଇ ପାଣି ଭିତରେ ଛାଡ଼ିଦେଲା ।

ମୁକ୍ତି ପାଇ ମାଛଟି ପାଣିରେ ଚକ୍କର କାଟି ପହଁରି ଖେଳିବାକୁ ଲାଗିଲା । ତା'ର ଖେଳ ଦେଖି ଆନନ୍ଦରେ ବିଭୋର ହେଲା ସତ୍ୟଜିତ୍ । ପାଣିରେ ପହଁରି ପହଁରି ମନ ଆନନ୍ଦରେ ମାଛଟି ଭାବିବାକୁ ଲାଗିଲା ସତ୍ୟଜିତ୍ ବିଷୟରେ । ପ୍ରକୃତରେ ସତ୍ୟଜିତ୍ କେତେ ଉଦାର । ତା' ନ ହେଲେ ଏତେ ସୁନ୍ଦର ମାଛଟିଏ ପାଇ, ନ ଖାଇ କ'ଣ ସହଜରେ କେହି ଛାଡ଼େ ? କୃତଜ୍ଞତାରେ ମଥା ତା'ର ନଇଁଗଲା ସତ୍ୟଜିତ୍ ପାଖରେ । ସେ ମାଛ ମଧ୍ୟ ଗୋଟିଏ ସାଧାରଣ ମାଛ ନ ଥିଲା, ସେ ଥିଲା ମତ୍ସ୍ୟରାଜାର କନ୍ୟା । ସେ ଚାହିଁଲେ ତା'ର ରୂପ ବଦଳାଇ ପାରେ ।

ଶେଷରେ ସେ ମତ୍ସ୍ୟକନ୍ୟାଟି ଗୋଟିଏ ସୁନ୍ଦର ଝିଅ ରୂପ ଧରିଲା । ଅଣ୍ଟାଠାରୁ ଉପରକୁ ମନୁଷ୍ୟ ଓ ଅଣ୍ଟାଠାରୁ ତଳକୁ ମାଛ ।

ମାଛର ଏ ରୂପ ଦେଖି ସତ୍ୟଜିତ୍ ଚମକି ପଡ଼ିଲା । ନିଜ ଆଖିକୁ ସେ ଏ କଥା ବିଶ୍ୱାସ କରିପାରିଲା ନାହିଁ । ସେ କନ୍ୟାର ରୂପ ଦେଖି ବିଭୋର ହୋଇଗଲା । ଶେଷରେ ସେ ପାଟିକରି କହିଲା– ତୁମେ କିଏ ?



ଆଡ଼େ ଏକ- ଲୟରେ ଚାହିଁ ରହି ସେ ମତ୍ସ୍ୟକନ୍ୟା କଥା ଭାବିବାକୁ ଲାଗିଲା । ମୁଦିଟିକୁ ହାତରେ ଧରି ଏପାଖ ସେପାଖ କରୁଥାଏ ।

ନାଆ ଚାଲିଛି । ଭାସି ଭାସି ଯାଇ ଗୋଟିଏ ଦେଶରେ ଲାଗିଲା । ସତ୍ୟଜିତ୍ ନାଆରୁ ଓହ୍ଲାଇ କୂଳକୁ ଯାଇଛି କି ନାହିଁ, ଜଣେ ସିପାହୀ ଆସି ତାଙ୍କ ଆଗରେ ପହଞ୍ଚି ତାଙ୍କଠାରୁ ସେ କିଏ, କାହିଁକି ଆସିଛନ୍ତି ସବୁକଥା ପଚାରି ବୁଝିଲା । ଶେଷରେ ସିପାହୀଜଣକ କହିଲା, "ଆମ ରାଜାଙ୍କର ଗୋଟିଏ ଆଦେଶ ଅଛି । ଯେଉଁ ନୂଆ ଲୋକ ଏ ଦେଶରେ ଆସି ପାଦ ଦିଏ, ସେ ପ୍ରଥମେ ରାଜାଙ୍କୁ ଦେଖା କରିବ ଓ ରାଜଜେମାଙ୍କ ଆଦେଶ ମାନିବାକୁ ପଡ଼ିବ । ଯେ ତାଙ୍କ କଥା କରି ନ ପାରିବ, ମୁଣ୍ଡକାଟ ହେବ ଓ ଯିଏ ଜେମା ଯାହା କହିବେ, କରିପାରିବ, ସେ ତାଙ୍କୁ ବିଭା ହେବ ।"

ସତ୍ୟଜିତ୍ ଏ ପ୍ରକାର ପ୍ରଶ୍ନ ଶୁଣି କହିଲା, "ମୁଁ କିଏ, ତୁମେ ମୋତେ ଦେଖି କ'ଣ କିଛି ଜାଣିପାରୁ ନାହଁ ? ପ୍ରକୃତରେ ତୁମେ ଦେବୀ ନା ମାନବୀ, ମୋତେ କପଟ ନ କରି କୁହ ।"

ସତ୍ୟଜିତ୍‌ର ଏପରି କଥା ଶୁଣି ମତ୍ସ୍ୟକନ୍ୟା ଖିଲି ଖିଲି ହୋଇ ହସିଉଠିଲା । ହସରୁ ଚୂନା ଚୂନା ହୀରାଖଣ୍ଡ ଖସିପଡ଼ିଲା ସମୁଦ୍ର ଭିତରକୁ । ସେ ହସ ଭିତରେ ସେ କହିଲା, "ମୁଁ ମତ୍ସ୍ୟକନ୍ୟା ।" ଏହା ଶୁଣି ସତ୍ୟଜିତର ଆଶ୍ଚର୍ଯ୍ୟ ଆହୁରି ବଢ଼ିଗଲା ।

ମତ୍ସ୍ୟକନ୍ୟା କହିଲା, "ହେ ସୌଦାଗର, ମୁଁ କିଏ, ତୁମର ସେ କଥା ଜାଣିବା ଦରକାର ନାହିଁ । ହେଲେ ତୁମେ ମୋର ବହୁତ ଉପକାର କରିଛ, ସେଥିପାଇଁ ମୁଁ ତୁମ ଉପରେ ବଡ଼ ଖୁସି । ତୁମକୁ ଗୋଟିଏ କୁହୁକ ମୁଦି ଦେଉଛି । ସେ ମୁଦି ତୁମର ବଡ଼ ଉପକାର କରିବ । ତୁମକୁ ଯଦି କେବେ କିଛି ବିପଦ ପଡ଼େ, ତେବେ ଏ କୁହୁକ ମୁଦିର ସାହାଯ୍ୟ ଚାହିଁଲେ ସେ ବିପଦରୁ ଉଦ୍ଧାର କରିବ ।" ମୁଦିଟି ନାଆ ଭିତରକୁ ପକାଇଦେଇ ମତ୍ସ୍ୟକନ୍ୟା ପାଣିରେ ବୁଡ଼ି କେଉଁଆଡ଼େ ଚାଲିଗଲା ।

ବଡ଼ ଚିନ୍ତାରେ ସତ୍ୟଜିତ୍ ବସିଗଲା । ନୀଳସମୁଦ୍ର

ସତ୍ୟଜିତ୍ ବଡ଼ ଅଡୁଆରେ ପଡ଼ିଗଲା । କ'ଣ ଏବେ କରିବ ? ନ ଗଲେ ନ ହୁଏ । ଶେଷରେ ସିପାହୀ ସାଙ୍ଗରେ ରାଜାଙ୍କ ପାଖକୁ ଗଲା । ରାଜା ସତ୍ୟଜିତ୍‌କୁ ଦେଖି ତାଙ୍କ ବିଷୟରେ ସବୁକଥା ପଚାରି ବୁଝିଲେ । ଶେଷରେ ଜେମା ଆସି ପହଞ୍ଚିଲେ । ସେ ସତ୍ୟଜିତ୍‌କୁ ଦେଖି ପ୍ରଥମେ ଭାରି ଖୁସି ହେଲେ । ତାଙ୍କ ବିଷୟରେ ସବୁକଥା ଜାଣି କହିଲେ, "ସୌଦାଗର ! ମୋ ଉଆସରେ ତୁମରି ଭଳି ଗୋଟିଏ ପଥର ମୂର୍ତ୍ତି ଗଢ଼ା ହେବା ଦରକାର । ତୁମେ ଗୋଟିଏ ମୂର୍ତ୍ତି ଗଢ଼ିଦେଇ ଯାଅ ।"

ବଡ଼ ଅଡୁଆରେ ସେ ଏବେ ପଡ଼ିଲା । କିପରି ମୂର୍ତ୍ତି ଗଢ଼ିବ ! ଏ କଥା ଚିନ୍ତା କରୁଥାଏ, ଜେମା କହିଲେ,



ଏ ପଥରେ ଗଢ଼ିଦେଲେ ମୂରତି
ତେବେ ସିନା ମୁହିଁ ପାଇବି ମୁକତି ।”

ସତ୍ୟଜିତ୍‌ର ଆଦେଶ ପାଇ ସଙ୍ଗେ ସଙ୍ଗେ ମୁଦି ଭିତରୁ ଗୋଟିଏ ଲୋକ ବାହାରି ପଥରକୁ ଧରିଲା । ସେ ଯେମିତି ଛୁଇଁ ଦେଇଛି, ସଙ୍ଗେ ସଙ୍ଗେ ପଥର ଗୋଟିଏ କାଦୁଅ ପିଣ୍ଡୁଳା ପରି ହୋଇଗଲା । ସହଜରେ ମୂର୍ତ୍ତିଟିଏ ଗଢ଼ି ସେ ମୁଦି ଭିତରେ ପ୍ରବେଶ କଲା । ଏହା ଦେଖି ସତ୍ୟଜିତ୍ ମନ ଆନନ୍ଦରେ ନାଚିଲା ।

“ପଥର ମୋ ଉଆସରେ ଅଛି । ତେଣୁ ଭାବିବାର କିଛି ନାହିଁ । ଏହିପରି ମୋର ତିନୋଟି କଥା କରିବାକୁ ପଡ଼ିବ ।”

ଜେମାଙ୍କ ଆଦେଶରେ ଦାସୀମାନେ ନେଇ ସତ୍ୟଜିତ୍‌କୁ ପଥର ପାଖରେ ପହଞ୍ଚାଇଦେଲେ ।

ଈଶ୍ୱରଙ୍କୁ ଧ୍ୟାନ କରି ସତ୍ୟଜିତ୍ ନିହାଣ ଧରିଲା । ସେ ନିଶ୍ଚିତଭାବରେ ଜାଣିଲା ଯେ ତା’ର ମୁଣ୍ଡ କାଟ ହେବ । ଜୀବନରେ କେବେ ପଥର କାମ କରିନି ସେ, ଏବେ କିପରି କରିବ ? ସେ ଯେପରି ପଥର ହାଣିବାକୁ ଆରମ୍ଭ କରି ଗୋଟିଏ ଚୋଟ ଦେଇଛି, ସଙ୍ଗେ ସଙ୍ଗେ ପଥର ଚିତ୍କାର କରିଉଠିଲା ଓ ଖଣ୍ଡିଆ ହୋଇଥିବା ଜାଗାରୁ ଧାର ଧାର ରକ୍ତ ବହିଗଲା । ତାଟକା ହୋଇ ସେ ପଥରକୁ ଚାହିଁ ରହିଥିଲା ସତ୍ୟଜିତ୍ । ଅଦ୍ଭୁତ ପଥର । ମନେ ପଡ଼ିଗଲା ମତ୍ସ୍ୟକନ୍ୟା କଥା । ହାତରେ ପିନ୍ଧିଥିବା ମୁଦିଟିକୁ ଦେଖି ସେ କହିଲା–

“କୁହୁକ ମୁଦିରେ କୁହୁକ ମୁଦି
ଏଥକୁ ମୋହର ନ ଆସେ ବୁଦ୍ଧି

ମୂର୍ତ୍ତି ଗଢ଼ାହେବା ଖବର ପାଇ ଜେମା ଆସି ଦେଖିଲେ ପ୍ରକୃତରେ ସୌଦାଗରର ଅବିକଳ ମୂର୍ତ୍ତିଟିଏ ସେ ପଥରରେ ଗଢ଼ା ହୋଇଛି । ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ ।

ତା’ପରେ ରାଜଜେମା କହିଲେ, “ଏଥର ତୁମେ ମୋତେ ଗୋଟିଏ ହୀରାର ଚମ୍ପାଫୁଲ ଦିଅ, ଯାହା ଦେହରୁ ଚମ୍ପାଫୁଲର ବାସ୍ନା ସବୁବେଳେ ବାହାରୁଥିବ । ସେ ଫୁଲ କେବେ ମଉଳିବ ନାହିଁ କି ତା’ର ବାସ୍ନା ସରିବ ନାହିଁ ।”

ପୁଣି ଏକ ବିଷମ ପରୀକ୍ଷା । କ’ଣ ଏବେ କରିବ ! କୁହୁକ ମୁଦିକୁ ହୀରା ଚମ୍ପାଫୁଲ କଥା କହିଲା । କୁହୁକ ମୁଦି ବା କେଉଁ କଥା କରି ନ ପାରିବ ! ଆଦେଶ ପାଇ ତା’ ଦେହରୁ ଗୋଟିଏ ଚମ୍ପାଫୁଲ ଖସାଇଦେଲା । ତାହା ଦେହରୁ ବାହାରୁଥିଲା ଚମ୍ପାଫୁଲର ବାସ୍ନା ।

ଏ ଖବର ଯାଇ ଜେମାଙ୍କ ପାଖରେ ପହଞ୍ଚିଲା । ସଙ୍ଗେ ସଙ୍ଗେ ଜେମା ଆସି ଦେଖିଲେ ସତକୁ ସତ ସୌଦାଗର ହାତରେ ହୀରାର ଫୁଲ । ଚମ୍ପାଫୁଲର

ବାସ୍ନାରେ ଖଣ୍ଡମଣ୍ଡଳ ମହ ମହ ହୋଇଉଠୁଛି । ଆଶ୍ଚର୍ଯ୍ୟରେ ଚାହିଁରହିଲେ ରାଜଜେମା ।

ଜେମା ଚିନ୍ତା କଲେ । କେଉଁଆଡ଼େ ନ ଯାଇ ସୌଦାଗର ଏ ଫୁଲ ପାଇଲେ କିପରି ? ତେଣୁ ସେ ସୌଦାଗର ପାଖରେ ରହି ଦେଖିବେ, ସେ ତାଙ୍କର ତୃତୀୟ କଥା କିପରି ରକ୍ଷା କରିବ । ଏହା ଠିକ୍ କରି କହିଲେ, "ସୌଦାଗର ତୁମେ ଏଥର ମୋତେ ବଇଁଶିଟିଏ ଆଣି ଦିଅ, ଯେଉଁ ବଇଁଶି ଆପେ ଆପେ ବାଜିବ ।" ଏହା କହି ସୌଦାଗର ପାଖରେ ବସିରହିଲେ ।

ସତ୍ୟଜିତ୍ ଏବେ କ'ଣ କରିବ । ଜେମା ସାମନାରେ ଅଛନ୍ତି, କିପରି ଅବା ମୁଦିକୁ କହିବେ । ମୁଦିକୁ ନ କହିଲେ ସେ ଅବା କିପରି ଦେବ । ଶେଷରେ ଉପାୟ ଚିନ୍ତା କରି ସତ୍ୟଜିତ କହିଲା, "ଏହି ଗୋଟେ କଥା । ମୋ ନାଆରେ ଏପରି କେତୋଟି ବଇଁଶି ଅଛି । ଗୋଟେ କାହିଁକି, ମୁଁ ଯେତେବେଳେ ସମୁଦ୍ର ମଝିରେ ଏକା ଏକା ଆସେ, ସେ ବଇଁଶି ବାଜେ ଓ ଗୀତର ସ୍ୱର ଶୁଣି ଶୁଣି ମୁଁ ଦୁଃଖ ଭୁଲିଯାଏ । ଆପଣ ଏବେ ଉଆସକୁ ଫେରିଯା'ନ୍ତୁ, ମୁଁ ସିପାହୀ ହାତରେ ଗୋଟିଏ ବଇଁଶି ପଠାଇଦେଇ ମୋ ଦେଶକୁ ଫେରିଯିବି ।"

ଜେମା କି ଆଉ ସହଜରେ ଛାଡୁଛନ୍ତି । ତାଙ୍କ ପଣ ଅନୁଯାୟୀ ବଇଁଶିଟିଏ ପାଇଲେ, ସେ ତାଙ୍କୁ ବିଭା ହେବେ । ସେ ଛାଡ଼ିଦେବେ କିପରି ? ଜେମା ତାଙ୍କ କଥାରେ ରାଜି ନ ହୋଇ ସତ୍ୟଜିତ୍ ସାଙ୍ଗେ ନୌକା ଆଡ଼େ ଗଲେ । ସମସ୍ୟା ବେଳକୁ ବେଳ ଜଟିଳ ହୋଇପଡୁଛି । କ'ଣ ଏବେ କରିବେ ? ଜେମାଙ୍କୁ ନାଆର ଦୁଆରେ ରଖି ବଇଁଶି ପାଇଁ ସଙ୍ଗେ ସଙ୍ଗେ ନୌକା ଭିତରକୁ ସତ୍ୟଜିତ ଚାଲିଗଲା । ଏକୁଟିଆ ହୋଇ ମୁଦିକୁ ସବୁକଥା କହିଲାକ୍ଷଣି ମୁଦି ଭିତରୁ ଗୋଟିଏ ବଇଁଶୀ ବାହାରି ଆସିଲା । ବଇଁଶୀ ଧରି ବାହାରକୁ ଆସିଲା । ବଇଁଶୀଟି ଆପେ ଆପେ ମଧୁର ସ୍ୱରରେ ବାଜୁଥାଏ ।

ସତ୍ୟଜିତ୍ ହାତରେ ବଇଁଶୀ ଦେଖି ଜେମାଙ୍କ ମୁଣ୍ଡ ତଳକୁ ହୋଇଗଲା । ସଙ୍ଗେ ସଙ୍ଗେ ସତ୍ୟଜିତ୍ ପାଦତଳେ ପ୍ରଣାମ କରି ତାଙ୍କ ବେକରେ ବରଣମାଳା ପିନ୍ଧାଇବା ପାଇଁ ସେ ଉଦ୍ୟତ ହେଲେ । ଏଥିରେ କିନ୍ତୁ ସତ୍ୟଜିତ୍ ବାଧା ଦେଇ କହିଲା, "ତୁମ ପରି ମଧ୍ୟ ମୋର ପଣ ଅଛି । ଯିଏ ମୋ ପଣକୁ ରଖିବ, ମୁଁ କେବଳ ତାକୁ ବିଭା ହେବି ।" ଏ କଥା ଶୁଣି ଜେମାଙ୍କ ଆଖିରୁ ଲୁହଧାର ବହିଗଲା ।

ପ୍ରକୃତରେ ଯଦି ଜେମାଙ୍କର ଏତେ ପଣ ଥିଲା ବିଭା ହେବା ପାଇଁ, ସୌଦାଗରର ବା କାହିଁକି ପଣ ନ ରହିବ ! ସୌଦାଗରର ପଣ କଥା ଶୁଣି ରାଜା ନିଜେ ସମୁଦ୍ର କୂଳକୁ ଆସିଲେ । ସତ୍ୟଜିତ୍‌ଙ୍କୁ ତାଙ୍କ ପଣ କଥା ପଚାରିଲେ ।

ସତ୍ୟଜିତ୍ କହିଲା, "ଜେମା ନିଜ ପଣ ରକ୍ଷା କରିବା ପାଇଁ ଯେତେ ଯୁବକଙ୍କୁ ହତ୍ୟା କରିଛନ୍ତି, ତାଙ୍କୁ ଯଦି ବଞ୍ଚାଇ ଦେଇପାରିବେ, ତେବେ ତାଙ୍କୁ ମୁଁ ବିଭା ହେବି ।"

ସୌଦାଗରର ଏପରି କଥା ଶୁଣି ରାଜା ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । କୌଣସି ଯୁବକ ପ୍ରଥମରୁ ପଣ ରକ୍ଷା କରିପାରନ୍ତି ନାହିଁ । ତେଣୁ ମୂର୍ତ୍ତି ଗଢ଼ିବାକୁ ଯାଇ ବିଫଳ ହେବାରୁ ରାଜା ସେହି ପଥର ଦେହରେ କଚାଡ଼ି ସେମାନଙ୍କୁ ମାରିଦିଅନ୍ତି । ତେଣୁ ପଥର ଖୋଳିବାକୁ ଗଲାବେଳେ ପଥର ଚିତ୍କାର କରିବା ଓ ରକ୍ତ ବାହାରିବା ଦେଖି ସୌଦାଗର ସତ୍ୟଜିତ୍ ଠିକ୍ ବୁଝି ପାରିଥିଲା ।

ରାଜା ଏବେ କ'ଣ କରିବେ ! ଶେଷରେ କହିଲେ, "ମରିଯାଇଥବା ଲୋକଙ୍କୁ ସେ ଏବେ କିପରି ବଞ୍ଚାଇବେ ?"

ଏହା ଶୁଣି ସତ୍ୟଜିତ୍ କହିଲା– "ବଞ୍ଚାଇ ପାରିବାର ଯାହାର ଶକ୍ତି ନାହିଁ, ମାରିବାର ଅଧିକାର କିଏ ଦେଲା ! ଆପଣ ଦେଶର ରାଜା ହୋଇପାରନ୍ତି, ତା'ବୋଲି ଜୀବନ ଉପରେ ଆପଣଙ୍କର କି ଅଧିକାର ଅଛି । ଜୀବନକୁ ଯିଏ ସୃଷ୍ଟି କରିଛି, ଜୀବନକୁ ନେବାର ଅଧିକାର ତା'ରି ଅଛି । ତେବେ ଆପଣ ମୋତେ ଅନୁମତି ଦିଅନ୍ତୁ, ମୁଁ ସେମାନଙ୍କୁ ବଞ୍ଚାଇବି । ଯଦି ଜୀବନରେ ସେମାନଙ୍କୁ ବଞ୍ଚାଇପାରିବି, ତେବେ ମୁଁ ରାଜଜେମାଙ୍କୁ ବିଭା ହେବି ।"

ଏ କଥା ଶୁଣି ରାଜାଙ୍କ ମଥା ତଳକୁ ହୋଇଗଲା । ସତ୍ୟଜିତ୍‌ର କଥା ଅନୁଯାୟୀ ତାଙ୍କୁ ଅନୁମତି ଦେଲେ ସେମାନଙ୍କୁ ବଞ୍ଚାଇବା ପାଇଁ ।

ସତ୍ୟଜିତ୍ କୁହୁକ ମୁଦିକୁ ସେମାନଙ୍କୁ ବଞ୍ଚାଇଦେବା ପାଇଁ ଅନୁରୋଧ କଲା । କୁହୁକ ମୁଦିର କୁହୁକରେ ସେ ପଥର ଦେହରୁ ଜଣକ ପରେ ଜଣେ ଯୁବକ ବାହାରିଆସି ସମୁଦ୍ର କୂଳରେ ପହଞ୍ଚିଲେ ।

ସମସ୍ତଙ୍କ ଉପସ୍ଥିତିରେ ସତ୍ୟଜିତ୍ ରାଜଜେମାଙ୍କୁ ବିଭା ହୋଇ ମନ ଆନନ୍ଦରେ ନିଜ ଦେଶକୁ ଫେରି–ଆସିଲା ।

*କପିଳେଶ୍ୱର, ଯାଜପୁର*

---

## ଗୋଲାପ ଚାଷ : ଏକ ନିଶା

ଚେଜିଂ ଦ ରୋଜ୍ : 'ଏନ୍ ଆଡ୍‌ଭେଞ୍ଚର ଇନ୍ ଦ ୱେନିସିଆନ୍ କଣ୍ଟ୍ରି ସାଇଡ୍' ଗୋଟେ ମଜାଦାର ବହି । ଲେଖିଛନ୍ତି ଜଣେ ଇଟାଲୀୟ-- ଆଣ୍ଡ୍ରିଆ ଡି ରୋବିଲାଣ୍ଟ । ତହିଁରେ ସେ ଏକ ଭାରତୀୟ ଦମ୍ପତିଙ୍କ ସମ୍ପର୍କରେ ଅନେକ ତଥ୍ୟ ଦେଇ ପ୍ରଶଂସା କରିଛନ୍ତି ।

ଏ ଦମ୍ପତି ହେଲେ କୋଡାଇକେନାଲ ଅଧିବାସୀ ଏମ୍.ଏସ୍. ବୀରରାଘବନ୍ ଓ ତାଙ୍କ ସ୍ତ୍ରୀ ଗିରିଜା । ବୀର ରାଘବନ୍ ଥିଲେ ଜଣେ ଆଇ.ଏ.ଏସ୍ । ଛାଡ଼ିଦେଲେ ଚାକିରି । ତାଙ୍କର ଫୁଲ ପ୍ରତି ଥିଲା ଦୁର୍ବଳତା । ବିଶେଷ କରି ଗୋଲାପ ପ୍ରତି । ସେ ଦିଗରେ ମନଦେଲେ । ଭାରତର ବଣଜଙ୍ଗଲ ଖୋଜିଲେ । ପାହାଡ଼ୀ ଗୋଲାପ ଉପରେ ଗବେଷଣା କଲେ । କଲେ ସୁନ୍ଦର ବଗିଚାଟେ ଖାଲି ଗୋଲାପରେ । ପ୍ରକାଶ କଲେ 'ଦି ଇଣ୍ଡିଆନ୍ ରୋଜ୍ ମାନୁଆଲ' । ଗତ ତିରିଶ ବର୍ଷ ଧରି ଏ ପତ୍ରିକାଟି



ସେମାନେ ପ୍ରକାଶ କରି ଚାଲିଛନ୍ତି । କେବଳ ଗୋଲାପଫୁଲ ନେଇ ଗବେଷଣା ଓ ଗୋଲାପର ଉନ୍ନତ ଚାଷ ହେବ କେମିତି, ସେ ନେଇ ଲେଖା ।

ଗିରିଜା କହନ୍ତି, "ସାମ୍ରାଜ୍ଞୀ ନୂରଜାହାଁ ତାଙ୍କ ଗାଧୋଇବା କୁଣ୍ଡରେ ତେଲବୁନ୍ଦାଏ ଦେଖିବାରୁ ଗୋଲାପ ଅତର ହେଲା । ସେମାନେ ବ୍ରହ୍ମା, ବିଷ୍ଣୁ ନାମକ ଗୋଲାପ ସେମାନେ ସୃଷ୍ଟି କରି ଏକ ମିଥ୍‌କୁ ଜନ୍ମ ଦେଇଛନ୍ତି । ମଣିପୁର ଓ ମିଆଁମାର ସୀମାରୁ ଆବିଷ୍କାର କରି ସବୁଠୁ ବଡ଼ ଗୋଲାପ ସେମାନେ ପୃଥିବୀକୁ ଭେଟି ଦେଇଛନ୍ତି - ରୋଜ ଜାଇଗାଣ୍ଟିଆ; ପୃଥିବୀର ବୃହତ୍ତମ ଗୋଲାପ । ଆମ ଜଳବାୟୁରେ କିଭଳି ଉନ୍ନତ ଗୋଲାପ ଚାଷ ହୋଇପାରିବ, ସେ ଲାଗି ନିରନ୍ତର ସେ ଦୁହେଁ ଚେଷ୍ଟିତ । ଆମେରିକାବାସୀ ସେମାନଙ୍କୁ 'ଦି ଗ୍ରେଟ୍ ରୋଜାରିଆନସ୍' ପୁରସ୍କାର ଦେଇଛନ୍ତି ।

**ଡ. ଶୁଭେଂଦ୍ରମୋହନ ଶ୍ରୀ ଚଂଦନ ସିଂହ,** *୨୦୬, ହନୀ ଅଞ୍ଜନା କଂପ୍ଲେକ୍ସ, ନାଗପୁର*



# ମୁଢ଼ି

ଶ୍ରୀ ଅଜୟ କୁମାର ପଟ୍ଟନାୟକ

ଅତି ପରିଚିତ ଗରିବଙ୍କ ମିତ
ନାମ ଅଟେ ମୋର ମୁଢ଼ି
ସମସ୍ତେ ଜାଣନ୍ତି ଭଲ ବି ପାଆନ୍ତି
ପିଲାଠାରୁ ବୁଢ଼ାବୁଢ଼ୀ ।
ମହାତମା ଗାନ୍ଧୀ କହିଲେ ମୁଁ କାଳେ
ଭାରତୀୟ ବିସ୍‌କୁଟ,
ଶୁଣିଲା ଦିନରୁ ଛାତିଟି ମୋହର
ହୋଇଗଲା କୁଣ୍ଢେମୋଟ ।
ମୋହର ମହତ୍ତ୍ୱ ପାକୁଆମାନଙ୍କୁ
ଭଲ ଭାବେ ଥାଏ ଜଣା,
ମତେ ସିନା ଗେଲ କରିବେ ମାଢ଼ିରେ
ଖାଇ କି ପାରିବେ ଚଣା ?
ଏଇ ଓଡ଼ିଶାରେ କେତେକ ଜାଗାରେ
ଲୋକେ ଡାକୁଛନ୍ତି 'ଭୁଜା'
ଅତି ଲୋକପ୍ରିୟ ହୋଇଥାଏ ଯଦି
ଥାଏ ମୁଁ ଗରମ ଭଜା ।
ମୟୂରଭଞ୍ଜ, ବାଲେଶ୍ୱର ପୁଣି
କଟକ ଓ କେଉଁଝର,
ମୁଖ୍ୟ ଜଳଖିଆ ପରି ହୁଏ ଖିଆ
ରହିଅଛି ମୋ ଆଦର ।
ଚିଡ଼ି, ଚାଙ୍ଗୁଡ଼ିରେ ପିଲାଏ ନେଇ କି
ଖାଉଥାନ୍ତି ଯେବେ ମୋତେ
ନାକତଳ ଅଠା ଝରଣାରେ ଲାଗି
କି ସୁନ୍ଦର ଦିଶେ ସତେ !
କଞ୍ଚାଲଂକା ସହ ଧନିଆ ପତର
ପିଆଜ, ସୋରିଷ ତେଲ,
ସମ୍ମାନିତ ହୁଏ ମିକ୍‌ଶ୍ଚର, ଟମାଟୋ
ଯଦି ମୋତେ ଦଳିଦେଲ ।
କାହା ପାଟି ଅବା ଲାଳୁଆ ନ ହେବ
ଦେଖିଲେ ଏ ମୁଢ଼ିଘାଣ୍ଟ,
ଝାଡ଼ାରୋଗୀ ମଧ୍ୟ ଖାଇ ପକାଇବ
ଥିଲେ ବି ଖରାପ ପେଟ ।
ମାଂସ ତରକାରି ହୋଇଥିଲେ ଘରେ
ଡବାରୁ ଡେଇଁବ ମୁଢ଼ି
ଝୋଳରେ ଚକଟି ମାରନ୍ତି ହାକୁଟି
ଖାଇ ପିଲା, ବୁଢ଼ା, ବୁଢ଼ୀ ।
ଲାଗଇ ବଢ଼ିଆ ମୁଢ଼ି ଓ ନଢ଼ିଆ
ଯେ ଖାଇଛି ଜାଣିଥିବ
ବୁଢ଼ାବୁଢ଼ୀ ବେଶୀ ଖାଇଦେଲେ ହେବ
ଦିପାବଳୀ ମହୋତ୍ସବ ।
ମନ ମାନସର ପ୍ରାତଃସ୍ମରଣୀୟ
ମୁକୁଟବିହୀନ ରାଜା,
'ଭୋଜରାଜ' ପରି ପ୍ରଜାବତ୍ସଳ ମୁଁ
ନାମଟି ମୋହର 'ଭୁଜା'
ବଞ୍ଚିଥାନ୍ତୁ ସର୍ବେ ନେଇକରି ମୋତେ
ଯିଏ ଯେଉଁ ପରି ଖାଉ
ମୋ ଶରୀର ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।

*ଜବାହର ନବୋଦୟ ବିଦ୍ୟାଳୟ, ଏଫ୍.ସି.ଆଇ, ବିକ୍ରମପୁର, ଅନୁଗୋଳ*



# ମିଛୁଆ ରାଧୁଆ

ଶ୍ରୀ ରବୀନ୍ଦ୍ର ନାଥ ମାଝୀ

ମିଛୁଆ ରାଧୁଆ ମିଛି କହି ଗାଁ ଲୋକଙ୍କୁ ସବୁବେଳେ ଠକିଛି । ଥରକୁଥର ଗାଁ'ଲୋକେ ତା'କଥା ଶୁଣି ଗାଁ ଛାଡ଼ି ତା' ପାଖକୁ ଧାଇଁଛନ୍ତି । ସବୁଥର ସେ ଗାଁ'ଲୋକଙ୍କୁ ଦେଖି ହସିଛି । ତେଣୁ ଛେଳି ଜଗୁଥିବା ରାଧୁଆକୁ ଗାଁ'ଲୋକେ 'ମିଛୁଆ ରାଧୁଆ' ବୋଲି ଡାକିଲେ । ଦୁନିଆଯାକ ଲୋକ ବି ମିଛୁଆ ରାଧୁଆ କହିଲେ ତାକୁ ହିଁ ଚିହ୍ନୁଥିଲେ ।

ଜଣେ ରାଜାଙ୍କର ସୁନ୍ଦରୀ ଝିଅଟିଏ ଥିଲା । ତାକୁ ବାହା ହେବା ପାଇଁ ବୀର ଯୁବକମାନେ ଇଚ୍ଛା କରି ରାଜାଙ୍କୁ ପ୍ରସ୍ତାବ ଦେଲେ । ରାଜା କିନ୍ତୁ ଗୋଟିଏ ସର୍ତ୍ତ ରଖିଲେ-- ଯିଏ ଲଗାତାର ୧୦୦ଟି ମିଛ କଥା ତାଙ୍କୁ ଶୁଣାଇପାରିବ, ତାକୁ ହିଁ ସେ ନିଜ ଝିଅକୁ ବିଭା କରାଇବେ, ନଚେତ୍ ମୁଣ୍ଡ କାଟ୍ ହେବ । ସର୍ତ୍ତକୁ ସମସ୍ତେ ପରିହାସ କଲେ । ମାତ୍ର ବହୁ ଧନୀ, ମାନୀ, ବୀର ଯୁବକ ମିଛ କହିବାକୁ ରାଜାଙ୍କ ଦରବାରରେ ଉପସ୍ଥିତ ହେଲେ । ସମସ୍ତେ ମିଛ କଥା କହିବା ଆରମ୍ଭ କଲେ ବି କେଉଁଠି ନାଁ କେଉଁଠି କିଛି କିଛି ସତକଥା କହି ପକେଇଲେ । ତେଣୁ ରାଜା ସେମାନଙ୍କର ମୁଣ୍ଡ କାଟ୍ କଲେ ।

ମିଛୁଆ ରାଧୁଆ ଏକଥା ଶୁଣିଲା । ମିଛ କହି ନ ପାରି ଜୀବନ ହାରୁଥିବା ଲୋକଙ୍କୁ ସେ ଥଟ୍ଟାମଜା କଲା । ନିଜେ ରାଜାଙ୍କ ଦରବାରରେ ପହଞ୍ଚିଗଲା । ଛେଳି ଜଗାଳି ଟୋକାଟାର ମୁଣ୍ଡରେ ଠେକା । ପିନ୍ଧିଛି ପୁରୁଣା ଲୁଗାଖଣ୍ଡେ । ତାକୁ ଦେଖି ସମସ୍ତେ ଠୋ ଠୋ ହସିଲେ । ମାତ୍ର ସେ କହିଲା, "ମୁଁ ୧୦୦ ମିଛ କହିପାରିବି ।" ରାଜା କହିଲେ, "ଦେଖ୍, ନ କହି ପାରିଲେ ଅନ୍ୟମାନଙ୍କ ପରି ମୁଣ୍ଡକାଟ୍ ହେବ ।"

ମିଛୁଆ ରାଧୁଆ ମିଛ କହିବା ଆରମ୍ଭ କଲା । ଗୋଟିକ ପରେ ଗୋଟିଏ ମିଛ । ମିଛଠୁ ବଳି ଡାହା ମିଛ ଅନର୍ଗଳ କହିଯାଉଥାଏ ରାଧୁଆ । ସବାଶେଷକୁ ରାଧୁଆ ବାଡ଼ିଟାରେ ମାଟିକୁ ଚାପି କହିଲା, "ମହାରାଜ! ମୁଁ ଆପଣଙ୍କୁ ୧୦୦ ମିଛ କହିଦେଲି । ଏଥର ମୋତେ ଆପଣଙ୍କର ଝିଅ ସହ ବାହା କରେଇ ଦିଅନ୍ତୁ ।"

ରାଜା ମନ୍ତ୍ରୀଙ୍କୁ କହିଲେ, "ଏ ଟୋକା କେତେ ମିଛ କହିଛି ?"

ମନ୍ତ୍ରୀ କହିଲେ, "ଅନେଶତ ମିଛ କହିଛି ।"

ରାଜା କହିଲେ, "ତେବେ ତା'ର ମୁଣ୍ଡ କାଟ ହେବ ।"

ରାଧୁଆ କହିଲା, "ମହାରାଜ ! ମୁଁ ସତ କହୁଛି, ଶହେ ମିଛ କହିଛି ।"

ରାଧୁଆ ଶହେ ମିଛ କହିଥିବା କଥା କ'ଣ ସତ ? ମନ୍ତ୍ରୀ ଅନେଶତ ବୋଲି ଗଣିଲେ କେମିତି ? ରାଧୁଆ ଶେଷକୁ କହିଲା– ମୁଁ ଶହେ ମିଛ କହିଛି, ଅନେଶତ ମିଛ କହି ସେ ଯେତେବେଳେ କହିଲା ଶହେ କହିଛି । ତାହା ବି ଥିଲା ଗୋଟିଏ ମିଛ । ତେଣୁ ଅନେଶତ ଓ ଶେଷ ମିଛ ମିଶି ୧୦୦ ମିଛ ହେଲା ।)

*କବିତା ଭବନ, ପ୍ଲଟ୍ ନଂ- ୧୧୩/୩୩୯୫, ଜୟଦେବ ବିହାର, ଭୁବନେଶ୍ୱର- ୧୩*

# ବାଇଗଣ ଭରତାର ମଜା

ଶ୍ରୀ ନଗେନ୍ଦ୍ରନାଥ ପଟ୍ଟନାୟକ

ଅନେକ ଦିନ ତଳର କଥା । ମହାରାଜା କୃଷ୍ଣଦେବ ରାୟଙ୍କର ସବୁଠୁ ପ୍ରିୟ ଖାଦ୍ୟ ଥିଲା ବାଇଗଣ ଭରତା । ଏଣୁ ସେ ନିଜ ବଗିଚାରେ ବହୁତ ବାଇଗଣ ଗଛ ଲଗାଇ ପ୍ରଚୁର ପରିମାଣରେ ବାଇଗଣ ଫଳାଉଥିଲେ ।

ଦିନକର କଥା । ରାଜକର୍ମଚାରୀମାନଙ୍କ ଲାଗି ସେ ଗୋଟିଏ ଭୋଜିର ଆୟୋଜନ କରିବାକୁ ଠିକ୍ କଲେ । ରାଜଦରବାରରେ ଉପସ୍ଥିତ ସଭିଙ୍କୁ ଏହି ଭୋଜିକୁ ଡକାଇଲେ । ରୋଷେୟାକୁ ବାଇଗଣ ଭରତା ଆଦେଶ ଦିଆଗଲା । ବାଇଗଣ ବେଶ୍ ନରମ, ମୁଲାୟମ୍ ଥିବା ଯୋଗୁଁ ଭରତା ଭାରି ସ୍ୱାଦିଷ୍ଟ ହୋଇଥାଏ । ବାଇଗଣ ଭରତାର ମଜା ଉଠାଇ ସାରିବା ପରେ ତେନାଲିରାମ ଘରକୁ ବାହୁଡ଼ି ପତ୍ନୀଙ୍କ ଆଗରେ ଭରତା ବିଷୟରେ ବେଶ୍ ତାରିଫ୍ କରିବାକୁ ଲାଗିଲେ । ଏ କଥା ଶୁଣି ତାଙ୍କ ପତ୍ନୀ ତାକୁ ଚାଖିବାକୁ ଅଡ଼ି ବସି କହିଲେ– ମୁଁ ସେଇ ବାଇଗଣ ଭରତା ଖାଇବି । ଯେତେ ବୁଝାଇବାକୁ ଚେଷ୍ଟା କଲେ ବି ବୁଝିବାକୁ ନାରାଜ । କ'ଣ ଅବା କରିବେ ?



ତା'ପରେ ମୁହଁ ଖୋଲି କହିଲେ–ଏ କାମ ତ ଭାରି ବିପଜ୍ଜନକ । ମହାରାଜା ଜାଣିଲେ ମୁଁ ବିପଦରେ ପଡ଼ିଯିବି । ହେଲେ ପତ୍ନୀ ତାଙ୍କର ଜିଦ୍‌ରେ ଅଟଳ । କ'ଣ କରିବି, କ'ଣ କରିବି ଭାବି ହଠାତ୍ ସେ ଚୁପ୍‌ଚାପ୍ ଯାଇ ମହାରାଜାଙ୍କ ବାଇଗଣ ବଗିଚାରୁ କିଛି ବାଇଗଣ ତୋଳି ଆଣିଲେ । ତହୁଁ ପତ୍ନୀ ବାଇଗଣ ଭରତା ତିଆରି କଲେ ଆଉ ଛ'ବରଷର ସାନ ପୁଅଟିକୁ ବି ଖୁଆଇଲେ । କମ୍ ବୟସର କାରଣ ହେତୁ ପିଲାଟିର ହେତୁ ଆସି ନ ଥାଏ । କ'ଣ ନା କ'ଣ କାହା ଆଗରେ କହିଦେଲେ କଥା ସେଇଠି ସରିଗଲା । ସବୁ କଥା ପଦାରେ ପଡ଼ିଯିବ । ପତ୍ନୀ କିନ୍ତୁ ଭାରି ଜିଦ୍‌ଖୋର । ଟିକି ଛୁଆଟିକୁ ସେ କଳେବଳେ କୌଶଳେ ପେଟ ଭରି ବାଇଗଣ ଭରତା ଖୁଆଇଲେ ।



ଏଥର ତେନାଲିରାମ ଭାବିଲେ–ଏମିତି କିଛି କରାଯିବା ଦରକାର, ଯେମିତି ପିଲାଟିକୁ ସେ ବାବଦରେ ପଚାରିଲେ ବି କିଛି କଥା ପଦାକୁ ଆସିବ ନାହିଁ । ରାତି ସମୟ । ହଠାତ୍ ସେ ଛାତ ଉପରକୁ ଯାଇ ସେଠାରେ ଶୋଇଥିବା ପୁଅ ଉପରେ ବାଲ୍‌ଟି ଭରି ପାଣି ଢାଳିଦେଲେ । ପାଣି ଦେହ ଉପରେ ପଡ଼ିବା ମାତ୍ରେ ପିଲାଟି ହଡ଼ବଡ଼ ହୋଇ ନିଦରୁ ଉଠି ପଡ଼ିଲା । ତା'ପରେ ତେନାଲିରାମ କହିଲେ, "ପୁଅ, ଏଇ ଦେଖୁନୁ ଖୁବ୍ ଜୋର୍‌ରେ ବର୍ଷା ହେଉଛି । ବେଗେ ତଳକୁ ଯାଇ ତୁ ଶୋଇପଡ଼ ।" ତହୁଁ ପିଲାଟି ଚଟ୍‌ପଟ୍ ତଳକୁ ଯାଇ

ଶୋଇପଡ଼ିଲା । ତେଣେ ମହାରାଜ ତାଙ୍କ ବଗିଚାରୁ ବାଇଗଣ ଚୋରି କଥା ଜାଣିବାକୁ ପାଇଲେ । ଘୋଷଣା କଲେ– ଯିଏ ସେଇ ବାଇଗଣ ଚୋରକୁ ଧରାଇ ମୋ ସାମନାରେ ହାଜର କରାଇବ, ତାକୁ ମୁଁ ପୁରସ୍କାର ଦେବି । ପ୍ରଧାନମନ୍ତ୍ରୀଙ୍କର ତେନାଲିରାମ ଉପରେ ସନ୍ଦେହ ଉପୁଜିଲା । ମହାରାଜ କହିଲେ–ତେନାଲିରାମ ଭାରି ଚାଲାକ୍ । ଏଇନା ତାକୁ ଯଦି ପଚରାଯାଏ, ସିଏ କିଛି ନା କିଛି ଆଳ ଦେଖାଇ କଥାଟାକୁ ଏଡ଼େଇଦେବ । ତେବେ ଏଇନେ ତା ସାନପୁଅକୁ ପଚରାଯାଉ । ତା'ପରେ ତେନାଲିରାମର ପୁଅକୁ ରାଜଦରବାରକୁ ଡକାହେଲା ।

ପ୍ରଧାନମନ୍ତ୍ରୀ ତାକୁ କହିଲେ–ପୁଅ, ଗତକାଲି ରାତିରେ ତୁ କି ତିଅଣ ଖାଇଥିଲୁ ? ପିଲାଟି କହିଲା, ବାଇଗଣ ଭରତା । ତେନାଲିରାମ କହିଲେ–ଜମାରୁ ନୁହେଁ । ଇଏ ତ ଟିକି ପିଲାଟିଏ । କ'ଣ ନା କ'ଣ କହିଦେଉଛି । କାଲି ରାତିରେ ସିଏ ଜଲ୍‌ଦି ଶୋଇପଡ଼ିଲା । ସ୍ୱପ୍ନରେ ନିଶ୍ଚୟ ସିଏ ବାଇଗଣ ଭରତା ଦେଖିଥିବ । ଏବେ ମୁଁ ଏ କଥାକୁ ପରିଷ୍କାର ଭାବେ କହିଦେଉଛି । ଏତିକି କହି ତେନାଲିରାମ ତାଙ୍କ କୁନିପୁଅଟିକୁ କହିଲେ– ପୁଅ, କାଲି ରାତିର ପାଗ କେମିତି ଥିଲା ? ପିଲାଟି କହିଲା–ପ୍ରବଳ ବର୍ଷା ହେଉଥିଲା । ମୋର ଜାମା, ପେଣ୍ଟ୍ ପୂରାପୂରି ଓଦା ହୋଇଗଲା ।

ତା'ପରେ ମହାରାଜାଙ୍କ ଆଡ଼କୁ ଚାହିଁ କହିଲେ– ହଜୁର୍, ଏବେ ଜାଣିଲେ ତ ମୋ ପୁଅ କ'ଣ କହୁଛି । କାଲି ରାତିରେ ତ ପାଗ ଶୁଖିଲା ଥିଲା । ସେମିତି ତା'ର ବାଇଗଣ ଭରତା କଥା ପୂରାପୂରି ମିଛ । ଏ କଥା ଶୁଣି ପ୍ରଧାନମନ୍ତ୍ରୀ ତାଜୁବ୍ ହୋଇଗଲେ । ତେନାଲିରାମ୍‌ଙ୍କୁ ସନ୍ଦେହ କରିଥିବା ଯୋଗୁଁ ସେ କ୍ଷମା ମାଗିଲେ ।

*ଜିଲ୍ଲା କୋଷାଗାର ଅଧିକାରୀ, ପୁରୀ*

# ଲେଖନୀର ପାଠଶାଳା

ନିମ୍ନ ବାକ୍ୟଗୁଡ଼ିକରେ କ'ଣ ଭୁଲ୍ ଅଛି ଦେଖ–
କ) ଭୂମିକମ୍ପର ସବୁ କାରଣଗୁଡ଼ିକ ସଂକ୍ଷିପ୍ତରେ ଲେଖ । ଖ) ସେ ନିରବିଚ୍ଛିନ୍ନ ଭାବେ ଭୂଲତା ନଚାଉଥିଲେ । ଗ) ଆମ ଐତିହକୁ ପାଶୋରିବା ଉଚିତ ନୁହେଁ । ଘ) ଏ ପିଲାଟିର ଭବିଷ୍ୟତ ଉଜ୍ଜ୍ୱଳମୟ । ଙ) ତାଙ୍କ ବ୍ୟକ୍ତିତ୍ତ୍ୱ ଯୋଗୁ ସେ ସମସ୍ତଙ୍କୁ ଆୟତ୍ତାଧୀନ କରିପାରିଛନ୍ତି ।

ଉତ୍ତର–

କ) 'ସବୁ କାରଣଗୁଡ଼ିକ' ସ୍ଥାନରେ କେବଳ କାରଣଗୁଡ଼ିକ ହେବ; ଦୁଇଟି ବହୁବଚନ ଚିହ୍ନ ନିଷ୍ପ୍ରୟୋଜନ । ସଂକ୍ଷିପ୍ତରେ ନ ହୋଇ 'ସଂକ୍ଷେପରେ ଲେଖ' ହେବ ।

ଖ) ନିରବିଚ୍ଛିନ୍ନ ସ୍ଥାନରେ 'ନିରବଚ୍ଛିନ୍ନ' ଏବଂ 'ଭ୍ରୂଲତା' କର ।

ଗ) ଐତିହ ନୁହେଁ, ଐତିହ୍ୟ; 'ପାଶୋରି ଦେବା'ର ଶୁଦ୍ଧ ବନାନ 'ପାସୋରିଦେବା' ।

ଘ) ଉଜ୍ଜ୍ୱଳମୟ ଭୁଲ୍; କେବଳ 'ଉଜ୍ଜ୍ୱଳ' ହେବ ।

ଙ) ବ୍ୟକ୍ତି+ତ୍ୱ= ବ୍ୟକ୍ତିତ୍ୱ (ବ୍ୟକ୍ତିତ୍ତ୍ୱ ନୁହେଁ) । ଆୟତ୍ତାଧୀନ ମଧ୍ୟ ଅନ୍ୟ ଏକ ଭୁଲ୍ । କେବଳ 'ଆୟତ୍ତ କରିପାରିଛନ୍ତି' ଲେଖ ।

ଆଜିକାଲି ଇଂରାଜୀ ବଦଳରେ କେତେକ ନୂଆ ଶବ୍ଦ ଆମ ଭାଷାରେ ପ୍ରଚଳିତ ହେଉଛି । ସେଗୁଡ଼ିକର ଅର୍ଥ ଜାଣିବା ଦରକାର । ତଳେ କେତୋଟି ଶବ୍ଦ ଦିଆଗଲା ।

ସର୍ବେକ୍ଷଣ- ସର୍ଭେ, ପ୍ରକଳ୍ପ- ପ୍ରୋଜେକ୍ଟ, ନିଗମ- କର୍ପୋରେସନ, ପ୍ରଦୂଷଣ- ଦୂଷିତୀକରଣ, ପୌରସଭା- ମ୍ୟୁନିସିପାଲିଟି ।



# ଜୟ ବିଜ୍ଞାନର ଜୟ (୨)

(ପୂର୍ବପ୍ରକାଶିତ ଉତ୍ତାରୁ)

ଶ୍ରୀ ଉମାକାନ୍ତ ମହାନ୍ତି

ମ୍ୟୁଜିୟମ୍‌ଟିର ଅନ୍ୟ ଗ୍ୟାଲେରୀରେ ଆହୁରି ବିସ୍ମୟକର ବସ୍ତୁ ସବୁ ଆମ ଆଖିରେ ପଡ଼ିଲା । ଏହାକୁ 'ମହାକାଶ ପରିକ୍ରମା ଗ୍ୟାଲେରୀ' ବୋଲି କୁହାଯାଇଥାଏ । ମହାକାଶ ପରିକ୍ରମା ନିମିତ୍ତ ବିଭିନ୍ନ ସମୟରେ ବୈଜ୍ଞାନିକମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ଅବିକଳ (ନମୁନା ନୁହେଁ) ପ୍ରଦର୍ଶନ ଏହି ଗ୍ୟାଲେରୀଟିର ବିଶେଷତ୍ୱ ।

ଉଡ଼ାଜାହାଜ ଉଦ୍ଭାବନ ଏବଂ ପରବର୍ତ୍ତୀ ସମୟରେ ଏଥିରେ ବିପୁଳ ପରିବର୍ତ୍ତନ ଫଳରେ ଏବେ ମନୁଷ୍ୟ ପକ୍ଷରେ ଆକାଶରେ ସ୍ୱଚ୍ଛନ୍ଦରେ ଉଡ଼ିବୁଲିବା ସହଜ ହୋଇଗଲା; କିନ୍ତୁ ମନୁଷ୍ୟ ସେତିକିରେ ସନ୍ତୁଷ୍ଟ ହେଲାନାହିଁ– କାମନାର ତ ଅନ୍ତ ନାହିଁ । ମନୁଷ୍ୟ ଆହୁରି ଆହୁରି ଉପରକୁ ଉଠିଯାଇ ମହାଶୂନ୍ୟରେ ଗ୍ରହ-ତାରକା-ଚନ୍ଦ୍ରମା ସ୍ପର୍ଶ କରିବା ପାଇଁ କାମନା କରି ଚାଲିଲା ଏବଂ ସେହି କାମନାକୁ ଚରିତାର୍ଥ କରିବା ପାଇଁ ବିଶ୍ୱରେ ବୈଜ୍ଞାନିକମାନେ ଉପାୟ ଖୋଜି ଚାଲିଲେ । ଫଳରେ ଆରମ୍ଭ ହେଲା ଅନ୍ତରୀକ୍ଷ ପରିକ୍ରମା ଯୁଗ । ଗ୍ରହମଣ୍ଡଳ ଏବଂ ତାରକାମଣ୍ଡଳକୁ ସ୍ପର୍ଶ କରିବା ପାଇଁ ବର୍ତ୍ତମାନର ସବୁଠାରୁ ଶକ୍ତିଶାଳୀ ଉଡ଼ାଜାହାଜ ସମ୍ପୂର୍ଣ୍ଣ ଅକ୍ଷମ; ସେଥିପାଇଁ ସ୍ୱତନ୍ତ୍ର ଯାନର ଆବଶ୍ୟକତା ଦେଖାଦେଲା ।

ଆମେରିକା ଏ ବିଷୟରେ ମଧ୍ୟ ଆଗୁଆ ହୋଇ ବାହାରିଲା । ଅବଶ୍ୟ ଋଷ ଦେଶର ମହାକାଶଚାରୀ ୟୁରି ଗାଗାରିନ୍ ୧୯୫୭ ମସିହାରେ ପ୍ରଥମ ମହାକାଶଚାରୀ ହିସାବରେ ପୃଥିବୀର କକ୍ଷପଥରେ ଘୂରିଆସି ବିଶ୍ୱରେ ବିପୁଳ ସମ୍ମାନରେ ସମ୍ମାନିତ ହେଲେ; କିନ୍ତୁ ଆମେରିକାର ନିଲ୍ ଆର୍ମଷ୍ଟ୍ରଙ୍ଗ୍ ଏବଂ ବଜ୍ ଆଲଡ୍ରିନ୍ ପ୍ରଭୃତି ମହାକାଶଚାରୀ ଆଉ ପାଦେ ଆଗେଇଯାଇ ୧୯୬୯ ମସିହା ଜୁଲାଇ ମାସରେ ଚନ୍ଦ୍ରପୃଷ୍ଠରେ ଓହ୍ଲାଇପଡ଼ି ଆମେରିକାର ଜାତୀୟ ପତାକା ପୋତିଦେଲେ । ଚନ୍ଦ୍ରପୃଷ୍ଠରେ ପଦଚାଳନା କରିବା ସହିତ ଫେରିଲାବେଳକୁ ସେଠାରୁ କିଛି ମାଟି, ପଥର ବି ସାଥିରେ ନେଇଆସିଲେ । ଏହି ଦୃଶ୍ୟ ସାରା ବିଶ୍ୱଜନତା ଦୂରଦର୍ଶନ ମାଧ୍ୟମରେ ଦେଖିବାକୁ ପାଇଲେ । ସେମାନେ ପ୍ରମାଣ କରିଦେଲେ ଯେ, ଚନ୍ଦ୍ର ଏବଂ ଗ୍ରହମଣ୍ଡଳରେ ଜୀବନ ସମ୍ଭବ ।

ଏହି ତଥ୍ୟକୁ ଭିତ୍ତିକରି ଆମେରିକାର ବୈଜ୍ଞାନିକମାନେ କାମରେ ଲାଗିଗଲେ । ସେମାନଙ୍କ ଯୋଜନାଗୁଡ଼ିକୁ ଆର୍ଥିକ ସହାୟତା ଯୋଗାଇବା ଏବଂ ବୈଜ୍ଞାନିକମାନଙ୍କ କାର୍ଯ୍ୟରେ ସମନ୍ୱୟ ଆଣିବା ପାଇଁ 'ନାସା' ନାମରେ (National Aeronautics & Space Administration) ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହେଲା ।

ଆମେରିକାର ବୈଜ୍ଞାନିକମାନେ ସୋୟୁଜ, ପାଇଓନିୟର, ଆପୋଲୋ, ଚ୍ୟାଲେଞ୍ଜର, ଡିସ୍‌କଭରୀ, ମରକରୀ, କଲମ୍ବିଆ, ଏଣ୍ଡିଭୋର, ଆଟ୍‌ଲାଣ୍ଟିସ୍ ପ୍ରଭୃତି ମହାକାଶଯାନ ତିଆରି କରିଚାଲିଲେ । ଚ୍ୟାଲେଞ୍ଜର, କଲମ୍ବିଆ ପ୍ରଭୃତି ମହାକାଶଯାନ ଦୁର୍ଘଟଣାର ଶିକାର ହୋଇଥିଲେ ମଧ୍ୟ ସେମାନେ ଦବିଯାଇ ନ ଥିଲେ । ନୂତନ ବୈଷୟିକ ଜ୍ଞାନକୌଶଳ ଲଗାଇ ମହାକାଶଯାନ ତିଆରି କରି ଚାଲିଲେ । ଖାଲି ତିଆରି କଲେ ନାହିଁ; ବରଂ ସେଗୁଡ଼ିକୁ ମହାକାଶକୁ ପଠାଇ ଅଜଣା ଜଗତର ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପୃଥିବୀବାସୀଙ୍କୁ ଜଣାଇ ଚାଲିଲେ ।

ପ୍ରକାଶଥାଉ କି, ଏହି ସମସ୍ତ ଯାନ ମୌଳିକ ରୂପରେ ଏଠାରେ ସାଇତା ହୋଇ ରହିଛି । ଏଥିସହିତ ସ୍କାଇଲାବ୍ ଶୃଙ୍ଖଳାର ସମସ୍ତ ତିନୋଟିଯାକ ଯାନ ଏଠାରେ ସୁରକ୍ଷିତ ଅବସ୍ଥାରେ ରହିଛି ।

ସ୍କାଇଲାବ୍-I ଅନ୍ତରୀକ୍ଷରେରେ ୨୮ ଦିନ, ସ୍କାଇଲାବ୍-II ୪୫ ଦିନ ଏବଂ ସ୍କାଇଲାବ୍-III ୧୧୫ ଦିନ ପରିକ୍ରମା କରି ଭୂପୃଷ୍ଠକୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପଠାଇପାରିଥିଲେ ।

ଏହା ବ୍ୟତୀତ ରକେଟ୍, ମିଜାଇଲ୍, ସାଟେଲାଇଟ୍‌ଗୁଡ଼ିକ ମଧ୍ୟ ବହୁ ରୂପରେ ଏଠାରେ ଦେଖିବାକୁ ମିଳିଥାଏ । ଆଜିକାଲି ଉପଗ୍ରହଗୁଡ଼ିକୁ ମହାଶୂନ୍ୟକୁ ପ୍ରେରଣ କରିବା ଉଚ୍ଚତର ବୈଜ୍ଞାନିକ ଉପଲବ୍ଧି ବୋଲି ବିଚାର କରାଯାଉଛି । ଦେଶ ଦେଶ ମଧ୍ୟରେ ଯୋଗାଯୋଗ, ମୋବାଇଲ୍ ସେବା, ଇଣ୍ଟରନେଟ୍, ପାଣିପାଗ ସମ୍ବନ୍ଧୀୟ ଆଗୁଆ ସୂଚନା, ଭୂପୃଷ୍ଠରେ ପରିବର୍ତ୍ତନ, ପରିବେଶ, ବାୟୁମଣ୍ଡଳରେ ପରିବର୍ତ୍ତନ ଇତ୍ୟାଦି ସମ୍ବନ୍ଧରେ ଆଗୁଆ ସୂଚନା ଏହି ଉପଗ୍ରହ ମାଧ୍ୟମରେ ମିଳିପାରୁଛି ।

ପ୍ରକାଶଥାଉ କି, ଭାରତ ମଧ୍ୟ ଏ ଦିଗରେ ଆଉ ପଛୁଆ ହୋଇ ରହିନାହିଁ । ଶ୍ରୀହରିକୋଟାରୁ 'ଆର୍ଯ୍ୟଭଟ୍ଟ' ଶୃଙ୍ଖଳାର କେତୋଟି ଉପଗ୍ରହ ପଠାଇ ମହାକାଶରୁ ପୃଥିବୀ ସମ୍ବନ୍ଧରେ ବିଶେଷ ତଥ୍ୟ ସଂଗ୍ରହ କରିବାର ପ୍ରଚେଷ୍ଟା ସେ ଆରମ୍ଭ କରିଛି । ଅବଶ୍ୟ ଏ ଦିଗରେ ସୋଭିଏଟ୍ ଋଷ୍ ଭାରତକୁ ବୈଷୟିକ ସାହାଯ୍ୟ ଯୋଗାଇଦେଇ ଆସୁଛି । ଏହି ସାଟେଲାଇଟ୍ ହିଁ ଭାରତର ବୈଦିକ ଯୁଗରେ ବିଶେଷ ପ୍ରସିଦ୍ଧି ଲାଭ କରିଥିବା ଏବଂ ଅଧୁନା ଲୁପ୍ତପ୍ରାୟ ସରସ୍ୱତୀ ନଦୀର ସତ୍ତା ଆବିଷ୍କାର କରିପାରିଛି ।

ରକେଟ୍ ଏବଂ ମିଜାଇଲ୍‌ଗୁଡ଼ିକ ଯୁଦ୍ଧ ସମୟରେ କିପରି ଶତ୍ରୁପକ୍ଷର କୌଣସି ଅଞ୍ଚଳକୁ ଧ୍ୱଂସ କରିବାରେ ବ୍ୟବହୃତ ହେଉଛି, ସେ ବିଷୟରେ ମଧ୍ୟ ବିଶେଷ ତଥ୍ୟ ରହିଛି । ରକେଟ୍‌ଗୁଡ଼ିକୁ ପଠାଇବା ପାଇଁ ସାନବଡ଼ ଅନେକ ପ୍ରକାର ରକେଟ୍ ଲଞ୍ଚର୍ ମଧ୍ୟ ଏଠାରେ ଦେଖିବାକୁ ମିଳିଲା ।

ଏଠାରେ ମହାକାଶଚାରୀଙ୍କ ବ୍ୟବହାର ପାଇଁ ବିଭିନ୍ନ ସମୟରେ ପ୍ରସ୍ତୁତ କରାଯାଇଥିବା ସ୍ପେସ୍ ସୁଟ୍ – କେତେ ଯୋଡ଼ା ପୋଷାକ, ଯୋତା, ମୋଜା, ଚଷମା, ଟୋପି ଇତ୍ୟାଦି ମଧ୍ୟ ସାଇତା ହୋଇଛି । ବିଶେଷ ଉଲ୍ଲେଖଯୋଗ୍ୟ ଯେ, ୧୯୪୫ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟରେ ଜାପାନର ହୀରୋସୀମା ଏବଂ ନାଗାସାକୀ ଉପରେ ପରମାଣୁ ବୋମା ପକାଇଥିବା ଆମେରିକାର ଉଡ଼ାଜାହାଜ ଆନୋଲା ଗେ ବି-୨୯ ବମ୍ବର (Anola gay - B-29 Bomber) ମଧ୍ୟ ଏଠାରେ ରଖାଯାଇଥିଲା; କିନ୍ତୁ ଏହା ଆମେରିକୀୟ ବାୟୁସେନା ପ୍ରତି ଘୋର ଅପମାନ ବୋଲି କିଛି ଲୋକ ବିଚାର କରିବାରୁ, ସେଇଟିକୁ ସେଠାରୁ ହଟାଇ ନିଆଯାଇ ତା' ସ୍ଥାନରେ ଏକ ନମୁନା ବିମାନ ରଖାଯାଇଛି ।

ଏଠାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ୟବହାର କରାଯାଇଥିବା ଅନେକ ଛୋଟବଡ଼ ଫାଇଟର୍-ବମ୍ବର୍ ବିମାନ ସହ ଏକ ଏରୋମାରାଇନ୍ ଫ୍ଲୋଟ୍‌ପ୍ଲେନ୍ ଉଡ଼ାଜାହାଜ ମଧ୍ୟ ରଖାଯାଇଛି ।

ଏହିପରି ଆଖି ଖୋସି ହୋଇଯାଉଥିବା ବିଜ୍ଞାନର ଅଶେଷ ଅଦ୍ଭୁତ କରାମତି ଦେଖି ଦେଖି ଆମେ ଉପର ମହଲାକୁ ଉଠିଲୁ । ଆମେ ତରବର ହୋଇ ତିନିଖଣ୍ଡି ଟିକେଟ୍ କାଟି ପକାଇଲୁ । ତେବେ ତା' ପୂର୍ବରୁ କିଛି ଖାଇନବା ପାଇଁ ଭାବିଲୁ କିଛି ନିରାମିଷ ଖାଦ୍ୟ ଖାଇ

ଆମେ ଲିଫ୍ଟରେ ଚଢ଼ି ଉପରକୁ ଉଠିଲୁ । ସେଠାରେ ଆମର 'ଆଇମାକ୍ସ' ଥିଏଟର ଦେଖିବାର ଥାଏ ।

ଆଇମାକ୍ସ ଅର୍ଥ ହେଉଛି– (Image Maximum) । ଛବିଗୁଡ଼ିକର ଆକାର ଖୁବ୍ ବଡ଼ ବଡ଼ । ଦେଖିଲେ ଲାଗିବ, ସତେଯେପରି ଘଟଣାବଳୀ ହାତପାହାନ୍ତାରେ ଘଟି ଚାଲିଛି; ହାତ ବଢ଼ାଇଦେଲେ ହାତ ବାଜିଯିବ । ଅବଶ୍ୟ ଏଥିପାଇଁ ଏକ ବିଶେଷ ଚଷମା 'ଥିଏଟର କମ୍ପାନୀ' ତରଫରୁ ଯୋଗାଇ ଦିଆଯାଇଥିଲା । ଏହି ଥିଏଟରଟିକୁ 'ଲକ୍ ହୀଡ୍ ମାର୍ଟିନ୍' କମ୍ପାନୀ ପ୍ରସ୍ତୁତ କରିଥାଆନ୍ତି । ଥିଏଟରର ବିଷୟବସ୍ତୁ ଥାଏ, ମହାଶୂନ୍ୟରେ 'ହବଲ୍ ଦୂରବୀକ୍ଷଣ ଯନ୍ତ୍ର'ର ମରାମତି ।

ଭାରତ ବା ବିଶ୍ୱର ଅନ୍ୟ ଯେଉଁଠାରେ ମାନମନ୍ଦିର ସବୁ ରହିଛି, ସେଠାରେ ବିଭିନ୍ନ ପ୍ରକାର ଦୂରବୀକ୍ଷଣ ଯନ୍ତ୍ରସବୁ ରହିଛି । କିନ୍ତୁ ହବଲ୍ ଟେଲିସ୍କୋପଟି ସଂପୂର୍ଣ୍ଣ ନିଆରା; ଏଥିରେ ବହୁ ଶକ୍ତିଶାଳୀ ଲେନ୍ସ ଲାଗିଥିବା କ୍ୟାମେରା ସବୁ ଖଞ୍ଜାଯାଇଛି । ଆଲୋକ ଥାଉ ବା ନ ଥାଉ, ବସ୍ତୁଟି ଯେପରି ଅବସ୍ଥାରେ ଥାଉ ନା କାହିଁକି, ଯେତେଦୂରରେ ଥାଉ ନା କାହିଁକି, କ୍ୟାମେରାରେ ଧରା ନ ପଡ଼ି ରହିପାରିବ ନାହିଁ । ଯେ କୌଣସି କୋଣରୁ ଫଟୋ ନେବାରେ କିଛି ଅସୁବିଧା ନାହିଁ । ଗ୍ରହମଣ୍ଡଳ, ତାରାମଣ୍ଡଳ ତଥା ମହାଶୂନ୍ୟରେ ନିତିପ୍ରତି ଘଟୁଥିବା ବିରଳ ଘଟଣାବଳୀର ନିଖୁଣ ଫଟୋଗ୍ରାଫ୍ ପୃଥିବୀପୃଷ୍ଠକୁ ପଠାଇବା ହେଉଛି, ଏହି ଟେଲିସ୍କୋପଟିର କାମ । ଏଇଟି ଆମେରିକାର 'ନାସା' ଦ୍ୱାରା ପ୍ରସ୍ତୁତ କରାଯାଇଛି । ଅବଶ୍ୟ ଏଥିରେ ଇଉରୋପୀୟ ମହାକାଶ ସଂସ୍ଥା ସମେତ ଅନ୍ୟ କେତେକ ସଂସ୍ଥାର ବୈଷୟିକ ସାହାଯ୍ୟ ନିଆଯାଇଛି ।

ଏହାର ଦୈର୍ଘ୍ୟ ହେଉଛି ୪୩ ଫୁଟ ଏବଂ ଓଜନ ୩୪,୫୦୦ ପାଉଣ୍ଡ । ମହାକାଶଯାନ 'ଡିସ୍କଭରୀ' ସହାୟତାରେ ୧୯୯୦ ମସିହା ଏପ୍ରିଲ ମାସ ୨୪ ତାରିଖରେ ଏଇଟିକୁ ପୃଥିବୀ କକ୍ଷପଥରୁ ସାମାନ୍ୟ ନିମ୍ନରେ ସ୍ଥାପନ କରାଯାଇଛି । ଏଥିରେ ହାରାହାରି ୧୦ ବିଲିୟନ୍ ଆମେରିକୀୟ ଡଲାର ଖର୍ଚ୍ଚ ହୋଇଛି । ଆଶା କରାଯାଉଛି, ଏହି ଯନ୍ତ୍ରଟି ୨୦୧୬-୨୦୨୧ ମସିହା ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହିପାରିବ । ପରେ ତାକୁ ତଳକୁ ଓହ୍ଲାଇଆଣି ତା' ସ୍ଥାନରେ ଆଉ ଏକ ଦୂରବୀକ୍ଷଣ ଯନ୍ତ୍ର 'ଜେମସ୍ ୱେବ୍' ଦୂରବୀକ୍ଷଣ ଯନ୍ତ୍ର ସ୍ଥାପନ କରାଯିବ । ଏଥିପାଇଁ ପ୍ରସ୍ତୁତିକାର୍ଯ୍ୟ ଆରମ୍ଭ ହୋଇଗଲାଣି ।

ଏହି ଟେଲିସ୍କୋପ୍‌ଟି ମହାକାଶଚାରୀମାନଙ୍କ ଦ୍ୱାରା ୧୯୯୩ରୁ ୨୦୦୨ ମଧ୍ୟରେ ତିନିଚାରିଥର ମରାମତି ହୋଇଛି । ବିଭିନ୍ନ ମହାକାଶଯାନରେ ଚଢ଼ି ମହାକାଶଚାରୀମାନେ ମହାକାଶରେ ଏହି କାର୍ଯ୍ୟ କରିଛନ୍ତି । ଆମେ 'ଆଇମାକ୍ସ ଥିଏଟର'ରେ ଏହାର ଶେଷ ମରାମତି ଦୃଶ୍ୟଟି ଦେଖିବାର ସୁଯୋଗ ପାଇଥିଲୁ ।

ମହାକାଶଯାନ 'ଆଟ୍‌ଲାଣ୍ଟିସ୍'ରେ ଚଢ଼ି ମସ୍‌ଗ୍ରେଭ୍ ଏବଂ ହଫ୍‌ମ୍ୟାନ୍ ପ୍ରଭୃତି ମହାକାଶଚାରୀ କିପରି



ଟେଲିସ୍କୋପଟିରେ ଖରାପ ହୋଇଯାଇଥିବା ଗୋଟିଏ 'କ୍ୟାମେରା ଲେନ୍ସ' ଯୋଡୁଛନ୍ତି, ଆମେ ଏହି ଦୃଶ୍ୟଟି ଦେଖିଥିଲୁ । ସେମାନେ କିପରି ପାଣି ଢାଳି ହୋଇ ଗାଧୋଉଛନ୍ତି, ରୁଟି-ତରକାରି ଖାଉଛନ୍ତି, ରୁଟି-ତରକାରି ପ୍ଲେଟ୍‌ଗୁଡ଼ିକ କିପରି ଶୂନ୍ୟରେ ଉଡ଼ିଯାଉଛି, ଏହିସବୁ ଦୃଶ୍ୟ ଦେଖି ଦେଖି ଆମେ ସେଦିନ ସ୍ତମ୍ଭୀଭୂତ ହୋଇଗଲୁ ।

ହବଲ୍ ଟେଲିସ୍କୋପଟି ଜ୍ୟୋତିର୍ବିଦ୍ ଏଡ୍‌ୱଇନ୍ ହବଲ୍‌ଙ୍କ ନାମାନୁସାରେ ନାମିତ ହୋଇଛି । ସେ ପ୍ରମାଣ କରିଥିଲେ ଯେ, ସମଗ୍ର ବ୍ରହ୍ମାଣ୍ଡ ସ୍ଥିର ନୁହେଁ.... ବ୍ରହ୍ମାଣ୍ଡର ନିଜସ୍ୱ ଗତି ଅଛି । ଏହା ଗତିଶୀଳ । ଏପରି ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସର୍ବପ୍ରଥମେ ମାନବଜାତିକୁ ଜଣାଇ ଦେଇଥିବାରୁ, ତାଙ୍କୁ ସମ୍ମାନ ଜଣାଇ ଟେଲିସ୍କୋପଟିକୁ 'ହବଲ୍ ଟେଲିସ୍କୋପ୍' ବୋଲି କୁହାଯାଇଥାଏ ।

ଏହି ଥିଏଟରଟି ୪୩ ମିନିଟ୍ ଧରି ଚାଲିଲା । କାହାରି ପାଟିରୁ କଥା ବାହାରିଲା ନାହିଁ । ଆଶ୍ଚର୍ଯ୍ୟ.....ଅଦ୍ଭୁତ । ଆମ ଆଖି ଆଗରେ ଏକ ଅବିଶ୍ୱାସ୍ୟ ମହାଜାଗତିକ ଦୃଶ୍ୟ ଅଭିନୀତ ହୋଇଗଲା । ଥିଏଟରଟିର ସମାପ୍ତି ଘୋଷଣା ହେବାପରେ, ଆମେ ସେଠାରୁ ବିଦାୟ ନେଲୁ । ଫେରିଲାବେଳେ ଆମକୁ ମିଳିଥିବା 'ବିଶେଷ ଚଷମା'ଟିକୁ ଫେରାଇଦେବାକୁ ହେଲା ।

ସମୟ ଅଭାବରୁ ସେହି ମ୍ୟୁଜିୟମ୍‌ଟିରେ ରହିଥିବା ଆହୁରି କିଛି ଆଶ୍ଚର୍ଯ୍ୟଜନକ ବସ୍ତୁ ଆମେ ଦେଖିପାରି ନଥିଲୁ । ସେଦିନ ମାନବ ଜାତି ପାଇଁ ବିଜ୍ଞାନ ଏବଂ ବୈଜ୍ଞାନିକମାନଙ୍କର ମହାନ୍ ଅବଦାନ ନିକଟରେ ବାରମ୍ବାର ମୁଣ୍ଡ ନୁଆଁଇ ଆମେ ସେ ଜାଗା ଛାଡ଼ିଲୁ ।

......ଜୟ ବିଜ୍ଞାନ ! .... ଜୟ ବୈଜ୍ଞାନିକ ସମାଜ !

*ମଣ୍ଡାସାହି, ଜଗତସିଂହପୁର*




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧ । MNP ର ପୂର୍ଣ୍ଣରୂପ କଅଣ ?

୨ । ବିଶ୍ୱ ଖାଉଟି ଅଧିକାର ଦିବସ (World Consumer Rights Day ) କେତେ ତାରିଖରେ ପାଳନ କରାଯାଇଥାଏ ?

୩ । ଭାରତର ପ୍ରଥମ ସମ୍ପୂର୍ଣ୍ଣ ଭାବରେ ବିଦ୍ୟୁତୀକରଣ ହୋଇଥିବା ଜିଲ୍ଲାର ନାମ କ'ଣ ?

୪ । 'Post Office' ପୁସ୍ତକର ରଚୟିତା କିଏ ?

୫ । କାହାକୁ ଜୁଡୋର ଜନକ (Father of Judo) ଭାବରେ ଅଭିହିତ କରାଯାଏ ?

୬ । ତମାଖୁ (Tobacco) ଉତ୍ପାଦନ କରିବାରେ ଆମ ଦେଶରେ ପ୍ରଥମ ସ୍ଥାନ ଅଧିକାର କରିଥିବା ରାଜ୍ୟର ନାମ କ'ଣ ?

୭ । ରାଜମହଲ କୋଇଲାଖଣି କେଉଁ ରାଜ୍ୟରେ ଅବସ୍ଥିତ ?

୮ । ନାରୋରା ଆଣବିକ ଶକ୍ତି କେନ୍ଦ୍ର (Narora atomic power plant) କେଉଁ ପ୍ରଦେଶରେ ଅବସ୍ଥିତ ?

୯ । ନେଟ୍ ସଟ୍ (Net shot) ଶବ୍ଦ କେଉଁ ଖେଳ ସହ ସଂପୃକ୍ତ ?

*ଦୁର୍ଗାପୁର, ଭାୟା- ତାଳଚେର, ଅନୁଗୁଳ- ୭୫୯୧୦*

(ଉତ୍ତର ୨୨ ପୃଷ୍ଠାରେ)

# ମାଆଙ୍କର ମିଛ କଥା



ଏଇ ଦୁନିଆରେ ମିଛର ସାଗରେ
ଭାସୁଛନ୍ତି ନାନା ଜନ,
କୋଣେ ଅନୁକୋଣେ ନର ଶ୍ରେୟ ମଣେ
ମିଥ୍ୟା ସତ୍ୟକୁ ଛାଡ଼ିଣ ।
ପୁଣି କେତେବେଳେ ମିଥ୍ୟା ତ ବଞ୍ଚାଏ
ଅନେକ ଲୋକର ପ୍ରାଣ,
ସେହିଠାରେ ମିଛ କାଚଠାରୁ ସ୍ୱଚ୍ଛ
ଅସୀମ ଗୁଣରେ ଜାଣ ।
ନର ମିଛ କହେ ନାରୀ ମିଛ କହେ
ଚାରିଆଡ଼େ ମିଛ ପୁରି
ମାଆର ମିଛରେ ଶତେକ ସଂଖ୍ୟାରେ
ଶିକ୍ଷା ତ ରହିଛି ପୂରି ।
ନାରୀ କେତେବେଳେ ଝିଅ ସାଜିଥାଏ
କେତେବେଳେ ହୁଏ ଜାୟା
କେତେବେଳେ ପୁଣି ସାଜେ ସେ ଭଗିନୀ
କେତେବେଳେ ପୁଣି ମାଆ ।
ମିଛ କହିଥାଏ ବିପଦ ସମୟେ
ଅନ୍ୟକୁ କରିଣ ଖୁସି
ବକ୍ଷେ ରଖି କୋହ ଢାଳି ଆଖି ଲୁହ
ବ୍ୟଥାଭରେ ଦିଏ ହସି ।
ମାଆ ମିଛ କହେ କରୁଣ କଣ୍ଠରେ
ସ୍ୱାର୍ଥକୁ ଦେଇ ଦ୍ୱାହି
ଭୋକ ସହି ନିଜେ ଖାଦ୍ୟ ଦିଏ ସେ ଯେ
ଭୋକ ହେଉନାହିଁ କହି ।
ମାଛ, ମାଂସ, ଅଣ୍ଡା ଘରେ ହେଲେ ରନ୍ଧା
ନିଜେ ହିଁ ରୋଷେଇ କରି
ଅନ୍ୟ ପାଇଁ ଫଳ ନିଜ ପାଇଁ ଝୋଳ
ଖାଏ ସିଏ ମନ ଭରି ।
ଘରର ଉନ୍ନତି ଭଲ କଥା ଚିନ୍ତି
କେବେ ତ ଶୁଅଇ ନାହିଁ
ପଚାରିଲେ କହେ 'ଆଜିକାଲି ମୋତେ
ନିଦ ଜମା ଲାଗୁନାହିଁ ।'
ରୋଗରେ ପଡ଼ିଲେ କହେ ସେବା କଲେ
'ମୋର କିଛି ହୋଇନାହିଁ
ଭଲ ହୋଇଯିବି ତୋ ପାଇଁ ବଞ୍ଚିବି
ମୋ କଥା ଭାବିବୁ ନାହିଁ ।'
ଘରୁ ବାହାରିଲେ ବିଦେଶକୁ ଗଲେ
ସାଥେ ମୁଁ କହଇ ଚାଲ
ବୋଝ ହେବ ଭାବି ହସିଦେଇ କହେ
'ବିଦେଶଠୁ ମୋ ଗାଁ ଭଲ ।'
ଜନମେ ମରଣେ ମାଆ ସବୁଦିନେ
ମଙ୍ଗଳ ମନାସୁଥାଏ
ନିଜେ ଦୁଃଖ ସହି ଦୀପ ସମ ଜଳି
ସୁଖର ଆଲୁଅ ଦିଏ ।
ଏମିତି କୁହଇ କେତେ ମିଛ କଥା
ସବୁ ଆମ ଭଲ ପାଇଁ
ତା'ର ମିଛ କଥା ତ୍ୟାଗର ପ୍ରତୀକ
ମାଆ ସେ ମମତାମୟୀ ।

*ଶିକ୍ଷକ, ସ୍ୱୟଂମ୍ଭା ଆଶ୍ରମ ବିଦ୍ୟାଳୟ, କୋଇଡ଼ା, ସୁନ୍ଦରଗଡ଼*



ଶ୍ରୀ ସୁରେଶ କୁମାର ପଣ୍ଡା

## ❖❖ ମୂଲ୍ୟବାନ ଉପହାର

ବହୁତ ବର୍ଷ ତଳର କଥା । ଗୁର୍ଜର ରାଜ୍ୟର ରାଜା 'କୁମାର ପଟ୍ଟଳ'ଙ୍କ ଗୁରୁ ଆଚାର୍ଯ୍ୟ ହେମଚନ୍ଦ୍ର କୌଣସି କାମରେ ଯାଇ ରାଜଧାନୀ ଫେରୁଥିଲେ । ରାସ୍ତାରେ ଗୋଟିଏ ସ୍ଥାନରେ ତାଙ୍କୁ ରାତି ବିତାଇବାକୁ ପଡ଼ିଲା । ସେଠାରେ ତାଙ୍କୁ ଜଣେ ବିଧବା ମହିଳା ଗୃହରେ ତାଙ୍କୁ ଆଶ୍ରୟ ନେବାକୁ ପଡ଼ିଲା ।

ମହିଳାଜଣଙ୍କ ଅତ୍ୟନ୍ତ ଶ୍ରଦ୍ଧାପୂର୍ବକ ଆଚାର୍ଯ୍ୟଙ୍କର ସ୍ୱାଗତ ସତ୍କାର କଲା । ନିଜର ଶକ୍ତି ଅନୁସାରେ ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରି ଖାଇବାକୁ ଦେଲା । ସେଇ ଖାଦ୍ୟତକ ଆଚାର୍ଯ୍ୟଙ୍କୁ ଅମୃତ ଭଳି ମନେହେଲା । ବିଧବାର ଭଙ୍ଗା କୁଡ଼ିଆ ତାଙ୍କୁ ରାଜପ୍ରାସାଦ ଭଳି ଲାଗିଲା ।

ତା'ପରଦିନ ଆଚାର୍ଯ୍ୟ ଯେତେବେଳେ ଫେରିବାକୁ ଉଦ୍ୟତ ହେଲେ, ନିଜ ହାତରେ ପ୍ରସ୍ତୁତ ଏକ ଚାଦର ତାଙ୍କୁ ଉପହାର ଦେଲା । ସେଇ ଚାଦର କାନ୍ଧରେ ପକାଇ ଆଚାର୍ଯ୍ୟ 'ରାଜଧାନୀ ପାଟଣା'ରେ ପହଞ୍ଚିଲେ ।

ନିଜ ଗୁରୁଙ୍କୁ ସ୍ୱାଗତ କରିବାକୁ କୁମାର ପଟ୍ଟଳ ନଗର ବାହାରକୁ ଆସିଲା । କିନ୍ତୁ ତାଙ୍କ କାନ୍ଧରେ ଗୋଟିଏ ମୋଟା ଚାଦର ଦେଖି ତାଙ୍କୁ ଭଲ ଲାଗିଲା ନାହିଁ । ସେଥିପାଇଁ କହିଲେ—ଗୁରୁଦେବ । ଆପଣଙ୍କ ଭଳି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ କାନ୍ଧରେ ଏଇ ଚାଦର ଶୋଭା ପାଉନାହିଁ ।

ସ୍ମିତହାସ୍ୟ କରି ଆଚାର୍ଯ୍ୟ କହିଲେ—ରାଜା ! ଏଇ ଶରୀର ତ ଅସ୍ଥି, ମାଂସରେ ଗଢ଼ା— ଦିନେ ନା ଦିନେ ମାଟିରେ ମିଶିବ । ଏଥିରେ ଯାହାକିଛି ବି ଘୋଡ଼େଇ-ହଲେ କି ପ୍ରଭେଦ ପଡ଼ିବ ?

—ଆପଣଙ୍କ ନିକଟରେ ତ ଦୁଃଖ ଓ ସୁଖର କୌଣସି ପ୍ରଭେଦ ନାହିଁ । କିନ୍ତୁ ନିଜ ଗୁରୁଙ୍କ ଶରୀରରେ ମୂଲ୍ୟବାନ ଚାଦର ବଦଳରେ ଏ ଶସ୍ତା ଚାଦରଖଣ୍ଡକ ଦେଖି ଲାଜ ଲାଗୁଛି— କହିଲେ କୁମାର ପଟ୍ଟଳ ।

ଆଚାର୍ଯ୍ୟ ଜାଣିପାରିଲେ ନିଜର ଐଶ୍ୱର୍ଯ୍ୟ ନିମନ୍ତେ ରାଜାଙ୍କ ମନରେ ଅହଙ୍କାର ସୃଷ୍ଟି ହୋଇଛି । ସେଥିପାଇଁ କହିଲେ—ରାଜା, ଏଇ ଚାଦରଖଣ୍ଡକ ସାଧାରଣ ଚାଦର ନୁହେଁ । ଏଥିରେ ଜଣେ ନିର୍ଦ୍ଧନର ଅକ୍ଲାନ୍ତ ପରିଶ୍ରମ, ଅନାବିଳ ସ୍ନେହ ପୂର୍ଣ୍ଣ ହୋଇ ରହିଛି । ସେଥିପାଇଁ ତୁମର ମୂଲ୍ୟବାନ ଉତ୍ତରୀୟଠାରୁ ଏହାର ମୂଲ୍ୟ ଅଧିକ ।

ଆଚାର୍ଯ୍ୟଙ୍କ କଥା ଶୁଣି ରାଜାଙ୍କ ମନର ଅହଙ୍କାର ଦୂର ହେଲା । ଗୁରୁଙ୍କ ନିକଟରେ ସିଏ କ୍ଷମା ପ୍ରାର୍ଥନା କଲେ ।

## ❖❖ ଦେଶର ସ୍ୱାର୍ଥ ବଡ଼

'ନେପୋଲିୟନ୍ ବୋନାପାର୍ଟ' ନିଜର ଜଣେ ବିରୋଧୀ ବ୍ୟକ୍ତିଙ୍କୁ ଏକ ଉଚ୍ଚ ପଦରେ ନିଯୁକ୍ତ କଲେ । ତାହା ଦେଖି କେତେଜଣ ଅଧିକାରୀ ଆପତ୍ତି କଲେ— ସମ୍ରାଟ୍ ! ଏଇ ଲୋକଟିର ଆପଣଙ୍କ ପ୍ରତି ବିଚାର ଭଲ ନୁହେଁ । ତେଣୁ ଏହାକୁ ନିଯୁକ୍ତି ଦେବା ଉଚିତ୍ ହେଲାନାହିଁ ।



ଯେଉଁ ପଦ ନିମନ୍ତେ ମୁଁ ତାକୁ ନିଯୁକ୍ତି ଦେଇଛି,

ସେଥିପାଇଁ ସିଏ ହେଉଛନ୍ତି ଉପଯୁକ୍ତ ବ୍ୟକ୍ତି । ମୋ ପ୍ରତି କାହାର ବ୍ୟକ୍ତିଗତ ଧାରଣା କ'ଣ, ସେକଥା ମୁଁ କେବେ ଚିନ୍ତା କରେନାହିଁ । କାରଣ ମୋ ନିମନ୍ତେ ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ଦେଶର ସ୍ୱାର୍ଥ ହିଁ ବଡ଼– ନେପୋଲିୟନ୍ କହିଲେ ।

## ✤✤ ରାଷ୍ଟ୍ରଭାଷାର ସମ୍ମାନ

ପ୍ରସିଦ୍ଧ ଗାନ୍ଧିବାଦୀ ନେତା ତଥା କଂଗ୍ରେସର ପୂର୍ବତନ ଅଧ୍ୟକ୍ଷ 'ପଟ୍ଟାଭି-ସୀତା-ରମୈୟା' ତାଙ୍କର ସମସ୍ତ ପତ୍ରରେ ହିନ୍ଦୀରେ ଠିକଣା ଲେଖୁଥିଲେ । ଏଥିପାଇଁ ଦକ୍ଷିଣ ଭାରତର ଡାକଘର, ବିଶେଷତଃ 'ମଛଲିପଟ୍ଟନମ୍' ଡାକଘରର କର୍ମଚାରୀମାନଙ୍କୁ ବହୁତ ଅସୁବିଧା ହେଉଥିଲା । ସେଥିପାଇଁ ଡାକଘର ତରଫରୁ ଏକ ପତ୍ର ଲେଖାଗଲା, "ମହାଶୟ ! ଦୟାପୂର୍ବକ ଚିଠିର ଠିକଣା ଇଂରାଜୀରେ ଲେଖନ୍ତୁ । ଏହା ଫଳରେ ଆମକୁ ପତ୍ର ବଣ୍ଟନରେ ସୁବିଧା ହୋଇପାରିବ ।"

ଜବାବରେ ସୀତାରମୈୟା ଲେଖିଲେ– ଭାରତର ରାଷ୍ଟ୍ରଭାଷା ହେଉଛି ହିନ୍ଦୀ । ସେଥିପାଇଁ ତାହାର ସମ୍ମାନ କରିବା ଆମର ପରମ କର୍ତ୍ତବ୍ୟ । ସେଥିପାଇଁ ମୁଁ ହିନ୍ଦୀରେ ଠିକଣା ଲେଖିବା ବଦଳେଇ ପାରିବି ନାହିଁ ।

ଡାକଘର ତରଫରୁ ପୁଣି ଲେଖାଗଲା– ଆପଣ ଯଦି ଠିକଣା ଇଂରାଜୀରେ ନ ଲେଖନ୍ତି, ତା' ହେଲେ ଆପଣଙ୍କ ସମସ୍ତ ପତ୍ର ଆମେ ଅଫିସ୍‌ରେ ହିଁ ପକେଇ ରଖିବାକୁ ବାଧ୍ୟ ହେବୁ ।

'ସୀତାରମୈୟା'ଙ୍କ ଉପରେ ଏହି ଧମକର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ ପୂର୍ବଭଳି ହିନ୍ଦୀରେ ହିଁ ଠିକଣା ଲେଖିବାକୁ ଲାଗିଲେ । ଶେଷରେ ବାଧ୍ୟ ହୋଇ 'ମଛଲିପଟନମ୍' ଡାକଘରେ ଜଣେ ହିନ୍ଦୀ ଜ୍ଞାନ ଥିବା ବ୍ୟକ୍ତିଙ୍କୁ ନିଯୁକ୍ତି ଦେବାକୁ ପଡ଼ିଲା ।

*ଗୁମୁଡ଼ା, ଭୈରବ ସିଂହପୁର, କୋରାପୁଟ- ୭୬୪୦୫୭*

---

## ସୁନାପ୍ରେମୀ ଭାରତ

ଭାରତୀୟମାନେ ଖୁବ୍ ସୁନାପ୍ରେମୀ । ସୁନା ଅଳଙ୍କାରରେ ଭାରତୀୟ ନାରୀ ମଣ୍ଡି ହେବାକୁ ଭଲପାଆନ୍ତି । ବାହାବେଳେ ଝିଅକୁ ଗୁଡ଼ିଏ ନୂଆ ସୁନା ଅଳଙ୍କାର ଯୌତୁକ ଦିଆଯାଏ । ଏପରିକି ବର୍ଷରେ ଗୋଟେ ନିର୍ଦ୍ଦିଷ୍ଟ ଦିନରେ କେତେକ ପରିବାର ନିଶ୍ଚୟ ସୁନା କିଣିବେ । ଭାରତୀୟମାନେ ଯଦି ସୁନା ନ କିଣନ୍ତେ, ପୃଥିବୀର ସୁନାବଜାରର ହାଲତ ବଦଳିଯାଆନ୍ତା । ଏବେ ଭାରତରେ ପ୍ରାୟ ୯୫୦୦ ଟନ୍‌ର ସୁନା ଅଛି । ମାତ୍ର ଏହା ରହିଛି ବିଭିନ୍ନ ଲୋକ ତଥା ବିଭିନ୍ନ ଅନୁଷ୍ଠାନଗୁଡ଼ିକଙ୍କ ପାଖରେ । ଏତେ ଟଙ୍କା ଖାଲି ପଡ଼ିରହିଛି ଦେଶର ବିକାଶରେ ତା'ର ବିନିଯୋଗ ହୋଇପାରୁନି ।

-- **ଡଃ ଶୁଭେନ୍ଦ୍ରମୋହନ ଶ୍ରୀ ଚନ୍ଦନସିଂହ,** ନାଗପୁର

# କୃପଣ କେଶିଆ

ଶ୍ରୀମତୀ ଚନ୍ଦ୍ରିକା ପଣ୍ଡା

ବହୁତ ବର୍ଷ ତଳେ ଗୋଟେ ରାଜ୍ୟରେ କେଶିଆ ବୋଲି ଜଣେ ଲୋକ ରାଜାଙ୍କ କୋଷାଧ୍ୟକ୍ଷ ଥିଲେ । ବହୁତ ପଇସା ଥାଇ ବି ସେ ଏତେ କୃପଣ ଥିଲେ ଯେ କେବେ ବି ମନବୋଧ କରି ଭଲ ଜିନିଷ କିଛି ଖାଉ ନ ଥିଲେ । ଦିନେ କେଶିଆ ତାଙ୍କ ଘରକୁ ଫେରୁ ଫେରୁ ଦେଖିଲେ ରାସ୍ତାରେ ଜଣେ ଲୋକ ଗୋଟିଏ ପିଠା ଧରି ଖାଉଛି । ପିଠା ଦେଖି କେଶିଆଙ୍କ ପାଟିରୁ ନାଳ ବୋହିଗଲା । ମନେ ମନେ ଭାବୁଥାନ୍ତି, "ଆହା କେତେ ଦିନ ହେଲା ପିଠା ପାଟିରେ ବାଜିନି । କେମିତି ଟିକେ ପିଠା ଖାଆନ୍ତି କି !"

ବଡ଼ ମନଦୁଃଖରେ କେଶିଆ ଘରେ ପହଞ୍ଚିଲେ । ତାଙ୍କ ମୁହଁ ଦେଖି ସ୍ତ୍ରୀ ଜାଣିଦେଲେ କିଛି ଗୋଟେ ଅସୁବିଧା ହୋଇଛି । ପଚାରିଲେ, "କ'ଣ ହୋଇଛି, ମୁହଁ କାହିଁକି ଶୁଖାଇଛ ? ରାଜା କ'ଣ କୌଣସି କଥାରେ ରାଗିଛନ୍ତି ନାଁ ଚାକରମାନେ ଦରମା ବଢ଼ାଇବାକୁ କହିଛନ୍ତି ?"

"ନାଁ, ନାଁ ସେମିତି କିଛି ହୋଇନି । କଥା କ'ଣ କି, ପିଠା ଖାଇବାକୁ ଭାରି ଇଚ୍ଛା ହେଉଛି ।" ଏହି ସାମାନ୍ୟ କଥା ଶୁଣି ସ୍ତ୍ରୀ ହସିଦେଲେ, "ଓ, ଏଇ କଥା ? ମୁଁ ଆଜି ଏତେ ପିଠା କରିଦେବି ଯେ ଆମେ ତ ପେଟପୂରା ଖାଇବା, ସାହିପଡ଼ିଶାଙ୍କୁ ବାଣ୍ଟିବା ।"

ସ୍ତ୍ରୀଙ୍କ କଥା ଶୁଣି କେଶିଆଙ୍କ ଅକଲ ଗୁଡୁମ୍, "ଆରେ ସାଇପଡ଼ିଶାଙ୍କୁ ବାଣ୍ଟିବା ପ୍ରଶ୍ନ କେଉଁଠୁ ଉଠୁଛି ? କେତେ ଖର୍ଚ୍ଚ ହେବ ଜାଣିଛଟି ?" ତା'ହେଲେ ମୁଁ ଖାଲି ଆମ ପାଇଁ ଓ ପିଲାଙ୍କ ପାଇଁ ପିଠା କରିଦେବି । ସେମାନେ ବି କେବେଠୁ ପିଠା ଖାଇନାହାନ୍ତି ।" କେଶିଆଙ୍କ ସ୍ତ୍ରୀ କହିଲେ ।

"ପିଲାମାନଙ୍କୁ ଦେବା କ'ଣ ନିହାତି ଦରକାର ? ଖାଲି ମୋ ପାଇଁ ଦି'ଖଣ୍ଡ କରିଦେଲେ ଚଳିବ ନାହିଁ । ତା'ଛଡ଼ା ମୁଁ ଖାଏ ବା ତୁମେ ଖାଅ, ଏକା କଥା ନୁହେଁ ?'' ସ୍ତ୍ରୀ ଆଉ କ'ଣ କରିବେ, ମୁଣ୍ଡ ହଲାଇ ହଁ କଲେ ।

ଏଥର କେଶିଆ କହିଲେ, "ରାତିରେ ପିଲାମାନେ ଶୋଇବା ପରେ ଛାତ ଉପରକୁ ଯାଇ ତୁମେ ପିଠା କରିବ, ନହେଲେ ପିଠା ବାସ୍ନାରେ ସେମାନେ ଉଠିପଡ଼ିବେ । ସାହିପଡ଼ିଶା ବି ଆସିପାରନ୍ତି । ସମସ୍ତଙ୍କୁ ଦେବାକୁ ପଡ଼ିବ ।"

କେଶିଆ ଓ ତାଙ୍କ ସ୍ତ୍ରୀ ଜିନିଷପତ୍ର ଧରି ଛାତ ଉପରକୁ ଗଲେ । ତାଙ୍କ ସ୍ତ୍ରୀ ଜନ୍ତଣି କରି ପିଠା ଛାଣି ବସିଲେ । ବାସନାରେ କେଶିଆଙ୍କ ପାଟିରୁ ନାଳ ବୋହି ପଡୁଥାଏ । ଖାଲି ପଚାରୁଥାଆନ୍ତି, "ପିଠା ହେଲା ?" ଦୁଇଟି ପିଠା ଛଣା ସରିଛି କି ନାହିଁ, କେଶିଆଙ୍କ ସ୍ତ୍ରୀ ଦେଖିଲେ ଛାତର ଆଉ ଗୋଟେ କଣରେ ଜଣେ ବୌଦ୍ଧ ଭିକ୍ଷୁ ଠିଆ ହୋଇଛନ୍ତି । ଦୁହେଁ ଆଶ୍ଚର୍ଯ୍ୟ । ଛାତ କବାଟ ତ ଦିଆହୋଇଛି, ତିନିମହଲା ଉପରକୁ ଇଏ ଆସିଲେ କେମିତି ?

କେଶିଆ ଅତି ରୁକ୍ଷ କଣ୍ଠରେ ପଚାରିଲେ, "ତୁମେ କାହିଁକି ଏଠିକି ଆସିଛ ? କ'ଣ ଦରକାର ?" ଭିକ୍ଷୁ ନୀରବରେ ଠିଆ ହୋଇଥାନ୍ତି । କେଶିଆ ଆହୁରି ରାଗିଗଲେ, "ଭିକ ମାଗିବାକୁ ଜାଗା ମିଳିଲା ନାହିଁ ଯେ ରାତି ଅଧରେ ଛାତ ଉପରକୁ ଆସିଛୁ ?" ତଥାପି ଭିକ୍ଷୁ ନୀରବ ରହିଲେ । ମନଇଚ୍ଛା ଗାଳିଦେଇ କେଶିଆ ଯେତେବେଳେ ଥକିଗଲେ, ସ୍ତ୍ରୀଙ୍କୁ ଚାହିଁ କହିଲେ, "ଦିଅ ଛୋଟିଆ ପିଠାଟିଏ ଛାଣି ଏ ଭିକାରୀକୁ ଦିଅ ।"

ସ୍ୱାମୀଙ୍କ କଥା ମାନି ସ୍ତ୍ରୀ ଅଳ୍ପ ଟିକିଏ ଖଳିରେ ପିଠା ଗଢ଼ି କରେଇରେ ଛାଣିଲେ । କିନ୍ତୁ ଚାହୁଁ ଚାହୁଁ ପିଠାଟି ବଢ଼ି ବଢ଼ି ତେଲ କରେଇ ପୂରିଗଲା । ସ୍ତ୍ରୀ ପୁଣି ଥରେ ଛୋଟ ପିଠାଟିଏ ପକାଇଲେ । ଏଥର ବି ପିଠାଟି ବହୁତ ବଡ଼ ହୋଇଗଲା । ଶେଷକୁ ବିରକ୍ତ ହୋଇ କେଶିୟା ସେଇ ବଡ଼ ପିଠାରୁ ଗୋଟିଏ ଦେବାକୁ ବାହାରିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ପିଠା ସବୁ ଏକାଠି ଲାଗି ଯାଇଥିଲା । ଯେତେ ଚେଷ୍ଟା କଲେ ବି ପିଠାକୁ ଅଲଗା କରିପାରିଲେ ନାହିଁ । ଏଥର କେଶିୟା ବୁଝିପାରିଲେ ଯେ ଭିକ୍ଷୁ ସାଧାରଣ ମଣିଷ ନୁହନ୍ତି, ସେ ହାର୍ ମାନି ଭିକ୍ଷୁଙ୍କ ପାଦତଳେ ଲୋଟିଗଲେ ଓ ଥାଳିକଯାକ ପିଠା ତାଙ୍କୁ ସମର୍ପଣ କଲେ । ଭିକ୍ଷୁ ତାଙ୍କୁ ଉଠାଇ ଧରି କହିଲେ, "ମୁଁ ତ ନିଜ ପାଇଁ ପିଠା ମାଗିବାକୁ ଆସି ନ ଥିଲି, ମୁଁ ମହାତ୍ମା ବୁଦ୍ଧ ଓ ତାଙ୍କ ଶିଷ୍ୟମାନଙ୍କ ପାଇଁ ତୁମ ପାଖରେ ଭିକ୍ଷା ମାଗୁଥିଲି । ଚାଲ ତୁମେ ନିଜେ ସେମାନଙ୍କୁ ଦେଇଆସିବ ।"



ଭିକ୍ଷୁଙ୍କ କଥା ମାନି ସ୍ୱାମୀସ୍ତ୍ରୀ ଦୁହେଁ ତାଙ୍କ ପଛେ ପଛେ ଚାଲିଲେ । ଦେଖିଲେ ଗୋଟିଏ ବଡ଼ ବରଗଛ ମୂଳେ ବୁଦ୍ଧ ବସି ଶିକ୍ଷା ଦେଉଛନ୍ତି ଓ ତାଙ୍କ ଆଗରେ



ବିଶାଳ ଜନସମୁଦ୍ର । "ଏ ଥାଳିକ ପିଠା ସମସ୍ତଙ୍କୁ କ'ଣ ଅଣ୍ଟିବ ?" କେଶିୟା ଭାବୁଥାନ୍ତି ଓ ଭିକ୍ଷୁଙ୍କ ନିର୍ଦ୍ଦେଶ ଅନୁସାରେ ବାଣ୍ଟି ଚାଲିଥାନ୍ତି । ଦେଖୁ ଦେଖୁ ସମସ୍ତେ ପେଟ ପୂରାଇ ପିଠା ଖାଇଲେ; କିନ୍ତୁ ଥାଳିକ ପିଠା ସେମିତି ଥାଏ । ଏଥର କେଶିୟା ବୁଝିଲେ ଏହା ବୁଦ୍ଧଙ୍କ ମାହାତ୍ମ୍ୟ । ସେ ବୁଦ୍ଧଙ୍କ ପାଦ ଧରି ତାଙ୍କୁ କ୍ଷମା ମାଗିଲେ ଓ ସେହିକ୍ଷଣି ହିଁ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । (ଜାତକ ଗଳ୍ପ)

*ବରମୁଣ୍ଡା, ଭୁବନେଶ୍ୱର*

---

୧. Mobile Number Portability, ୨. ମାର୍ଚ୍ଚ ୧୫ ତାରିଖରେ, ୩. ପଲକ୍କଡ, ୪. ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର, ୫. ଜିଗୋରୋ କାନୋ (Jigoro Kano) ଙ୍କୁ , ୬. ମହାରାଷ୍ଟ୍ର, ୭. ଝାଡ଼ଖଣ୍ଡ, ୮. ଉତ୍ତର ପ୍ରଦେଶ, ୯. ବ୍ୟାଡ୍‌ମିଣ୍ଟନ୍



# ଶୀତ : ପଶୁପକ୍ଷୀଙ୍କ ଗୀତ

ଶ୍ରୀ ବାସୁଦେବ ଥାଟୋଇ

ଶୀତ ସକାଳରେ ଗୀତ ଗାଉଥିଲା
ବଗ ପାଖେ ବସି ବଣି
ଗୁଣ୍ଡୁଚିମୂଷାଟା ତାଳି ମାରିଦେଲା
ସୁମଧୁର ଗୀତ ଶୁଣି ।
ବଣିଠୁ ଛଡ଼େଇ ବଗ ଆରମ୍ଭିଲା
ଚମତ୍କାର ଚଉପଦୀ
ଗଛ ତଳେ ଥାଇ ନାଚିଲା ନେଉଳ
ଏଣ୍ଡୁଅ ସହିତ ଗୋଧି ।
କାଉ ବସିଗଲା ଗଛ ଡାଳେ ଆସି
ଯାଉଥିଲା ଉଡ଼ି ଉଡ଼ି
କୋଇଲି କହିଲା– 'ଗା' ପଦେ ନାନୀ
ମୋ' କଣ୍ଠ ଯାଇଛି ପଡ଼ି ।'
ବାଇଚଢ଼େଇଟା ଲୋରି ଶୁଣାଇଲା
ବସାରେ କାଖେଇ ଛୁଆ
ସକେଇ–କପୋତୀ କାନ୍ଦଣା ଲହରୀ
ଶୁଣିକି କାନ୍ଦିଲା କୁଆ ।
ମନବୋଧ ଚଉତିଶା ଶୁଣାଇଲେ
ଶୁଆ ଆଉ ଶାରୀ ବେଗେ
କୁମ୍ଭାଟୁଆ ରାଗ ଚୋଖି ଶୁଣି ପାରା
ଗାଇଲା ଶାସ୍ତ୍ରୀୟ ରାଗେ ।
ଗାଁ ମୁଣ୍ଡ ବୁଢ଼ା ବରଗଛେ ସବୁ
ପକ୍ଷୀ ହେଲେ ଘୋଓ ଘୋଓ
ସମ୍ଭାଳି ନ ପାରି କଣା ବିଲୁଆଟା
ଡାକ ଦେଲା ହୁକେ-ହୋଓ ।
ବିଲୁଆ ଡାକରେ ହନୁ ହୁଙ୍କାରିଲା
ହଲାଇକି ଗଛ ଡାଳ
ଯେତେ ସବୁ ପକ୍ଷୀ ଉଡ଼ିଆଡ଼ି ଗଲେ
ଡେଣା ଝାଡ଼ି ଦଳଦଳ ।
ସୁରୂଯ କିରଣ ଟାଣ ହେଉଥିଲା
ଶୀତ ପଡୁଥିଲା ନଇଁ
ପଶୁପକ୍ଷୀଙ୍କର କଥା-କବିତାକୁ
ଆଉ ପଢ଼ିହେଲା ନାହିଁ ।
ପ୍ରକୃତି କୋଳରେ ସକଳ ଜୀବକୁ
ଯିଏ ଅଛି ହାତେ ଗଢ଼ି
ଶୀତ ସକାଳରେ ସେଇ ପାଦ ତଳେ
ହାତ ହୋଇଗଲା ଯୋଡ଼ି ।

*ଭାରତୀୟ ଜୀବନ ବୀମା ନିଗମ, ପଟ୍ଟାମୁଣ୍ଡାଇ ଶାଖା, କେନ୍ଦ୍ରାପଡ଼ା*

---



✪ ଲେମ୍ବୁକୁ ଘଣ୍ଟାଏ ଗରମ ପାଣିରେ ପକାଇ ରସ ବାହାର କଲେ, ଅଧିକ ରସ ବାହାରେ ।



# ଭାରତର ମଙ୍ଗଳ ଅଭିଯାନ

ଶ୍ରୀ ନିକୁଞ୍ଜ ବିହାରୀ ସାହୁ

ଗତ ସେପ୍ଟେମ୍ବର ୨୪ ତାରିଖ, ବୁଧବାର ସକାଳ । ଭାରତୀୟ ଅନ୍ତରୀକ୍ଷ ପ୍ରତିଷ୍ଠାନ 'ଇସ୍ରୋ'ର କଣ୍ଟ୍ରୋଲ ରୁମ୍‌ରେ ଏକ ଉତ୍କଣ୍ଠାପୂର୍ଣ୍ଣ ମୁହୂର୍ତ୍ତ । ଗତ ୨୦୧୩ ମସିହା, ନଭେମ୍ବର ୫ ତାରିଖରେ ଲୋହିତ ଗ୍ରହ ମଙ୍ଗଳ ଅଭିମୁଖେ ପ୍ରେରଣ କରାଯାଇଥିବା ଅନ୍ତରୀକ୍ଷ ଯାନ 'ମଙ୍ଗଳ ଯାନ' ଦୀର୍ଘ ୩୦୦ ଦିନର ଯାତ୍ରା ପରେ ମଙ୍ଗଳର ବାୟୁମଣ୍ଡଳରେ ପ୍ରବେଶ କରି ଗ୍ରହ ଚାରିପଟେ ଘୂରି ବୁଲିବ । ମଙ୍ଗଳଯାନ ଛୁଟି ଯାଉଥାଏ ସେକେଣ୍ଡ୍‌କୁ ୨୨.୧ କିଲୋମିଟର ଭଳି ଦୁରନ୍ତ ବେଗରେ ଲୋହିତ ଗ୍ରହ ଅଭିମୁଖେ । ଏହାର ବେଗ ତୁରନ୍ତ ହ୍ରାସ କରା ନ ଗଲେ ଏହା ମଙ୍ଗଳଗହକୁ ଅତିକ୍ରମ କରି ଚାଲିଯିବ ଏବଂ ଅନନ୍ତ ଅନ୍ତରୀକ୍ଷରେ କେଉଁ ଅଜଣା ଗର୍ଭରେ ହଜିଯିବ । ସୁତରାଂ ଯାନର ବେଗ ଯଥେଷ୍ଟ ହ୍ରାସ କଲେ ଯାଇ ଯାନଟି ମଙ୍ଗଳର ମହାକର୍ଷଣର ବଳ ଦ୍ୱାରା କବଳିତ ହୋଇ ଗ୍ରହ ଚାରିପଟେ ଘୂରିପାରିବ । ସୀମିତ ସମୟ ମଧ୍ୟରେ ଯାନର ପ୍ରଚଣ୍ଡ ବେଗ ନିର୍ଦ୍ଧାରିତ ମୂଲ୍ୟକୁ ହ୍ରାସ କରିବା ଏକ ଜଟିଳ ଓ ଉଚ୍ଚକୋଟୀର ପ୍ରଯୁକ୍ତିଗତ ପ୍ରକ୍ରିୟା ।

ଇସ୍ରୋର ବୈଜ୍ଞାନିକମାନେ ଯାନସ୍ଥିତ ଦୀର୍ଘ ୩୦୦ ଦିନ ଧରି କାର୍ଯ୍ୟନିବୃତ୍ତ ଅବସ୍ଥାରେ ରହିଥିବା ୪୪୦ ନିଉଟନ୍ ବଳର ତରଳ ଜାଳେଣି ଚାଳିତ ଶକ୍ତିଶାଳୀ ଇଞ୍ଜିନ୍‌କୁ ସଫଳତାର ସହ କାର୍ଯ୍ୟକ୍ଷମ କଲେ । ଯାନର ବେଗ ଧୀରେ ଧୀରେ କମିବାକୁ ଲାଗିଲା ଏବଂ ବେଗ ୪.୪ କି.ମି./ସେକେଣ୍ଡ୍ ମୂଲ୍ୟରେ ପହଞ୍ଚିବାକ୍ଷଣି ଏହା ହଠାତ୍ ମଙ୍ଗଳର ମହାକର୍ଷଣ ଦ୍ୱାରା କବଳିତ ହୋଇ ଗ୍ରହ ଚାରିପଟେ ଉପବୃତ୍ତାକର କକ୍ଷରେ ଘୂରିବାକୁ ଲାଗିଲା । ପ୍ରଯୁକ୍ତିଗତ ସଫଳତାରେ କାର୍ଯ୍ୟରତ ଏହି ବୈଜ୍ଞାନିକମାନେ ଉତ୍‌ଫୁଲ୍ଲ ହୋଇ ପରସ୍ପରକୁ ଅଭିବାଦନ ଜଣାଇଲେ ।

ସେବେଠୁ ମଙ୍ଗଳ ଯାନ ମଙ୍ଗଳ ଗ୍ରହ ଚାରିପଟେ ନିର୍ଦ୍ଧାରିତ କକ୍ଷ ପଥରେ ଘୂରିଆସୁଛି । ଇପ୍ସିତ କକ୍ଷରେ ପହଞ୍ଚିବାର ୫ ଦିନ ପରେ (ଅର୍ଥାତ୍ ସେପ୍ଟେମ୍ବର ୨୮ ତାରିଖ ଦିନ) ମଙ୍ଗଳ ଯାନ ୭୪,୦୦୦ କି.ମି ଉର୍ଦ୍ଧ୍ୱରୁ ଲୋହିତ ଗ୍ରହର ପ୍ରଥମ ଫଟୋଚିତ୍ର ଉତ୍ତୋଳନ କରି ପୃଥିବୀକୁ ପ୍ରେରଣ କରିଛି । ଏହି ଫଟୋଚିତ୍ରରେ ସମ୍ପୂର୍ଣ୍ଣ ଗ୍ରହଟି ଦୃଶ୍ୟ ହେଉଥିଲାବେଳେ ଗ୍ରହର ଦକ୍ଷିଣ ମେରୁରେ ଧଳା ଜାଜ୍ୱଲ୍ୟମାନ ବରଫାବୃତ ଶୃଙ୍ଗ ସ୍ପଷ୍ଟ ଦୃଷ୍ଟିଗୋଚର ହେଉଛି । ଫଟୋଚିତ୍ରରୁ ମଧ୍ୟ ଗ୍ରହର ଉତ୍ତର ଗୋଲାର୍ଦ୍ଧରେ



ପ୍ରବାହିତ ହେଉଥିବା ଏକ ବିଶାଳକାୟ ଧୂଳିଝଡ଼ ଦେଖିବାକୁ ମିଳୁଛି ।

ମଙ୍ଗଳଯାନ ଭାରତର ସର୍ବପ୍ରଥମ ଆନ୍ତର୍ଗ୍ରହୀୟ ଅନ୍ତରୀକ୍ଷ ଯାନ ଏବଂ ଲୋହିତ ଗ୍ରହରେ ପ୍ରଥମ ପ୍ରଚେଷ୍ଟାରେ ପହଞ୍ଚିବାରେ ଭାରତ ବିଶ୍ୱର ସର୍ବପ୍ରଥମ ଦେଶ । ଆହୁରି ମଧ୍ୟ ମଙ୍ଗଳ ଗ୍ରହରେ ପଦାର୍ପଣ କରିବାରେ ଯୁକ୍ତରାଷ୍ଟ୍ର ଆମେରିକା, ରୁଷିଆ, ୟୁରୋପୀୟ ଅନ୍ତରୀକ୍ଷ ସଂସ୍ଥା ପରେ ଭାରତ ବିଶ୍ୱର ଚତୁର୍ଥ ରାଷ୍ଟ୍ର । ୧୩୩୭ କି.ଗ୍ରା ଓଜନର ଏହି ମଙ୍ଗଳଯାନ ଅଭିଯାନ ପାଇଁ ଭାରତକୁ ଖର୍ଚ୍ଚ କରିବାକୁ ପଡ଼ିଛି ୪୫୦ କୋଟି ଟଙ୍କା । ତେବେ ପ୍ରଶ୍ନ ହେଉଛି, କୋଟି କୋଟି ଟଙ୍କା ବ୍ୟୟରେ– ଏହି ବ୍ୟୟବହୁଳ ଏହି ମଙ୍ଗଳ ଅଭିଯାନର ଅସଲ ଉଦ୍ଦେଶ୍ୟ କ'ଣ ?

**ଅଭିଯାନର ଅଭିପ୍ରାୟ:** ଅଭିଯାନର ପ୍ରମୁଖ ବୈଜ୍ଞାନିକ ଅଭିପ୍ରାୟ ହେଉଛି– ସ୍ୱଦେଶୀ ଜ୍ଞାନକୌଶଳରେ ନିର୍ମିତ ଯନ୍ତ୍ରପାତି ଜରିଆରେ ଆନ୍ତର୍ଗ୍ରହୀୟ ଯାତ୍ରା ନିମନ୍ତେ ଅଭିଯାନର ଦୂରସଞ୍ଚାର, ଦିଗଚାଳନା ଭଳି ମହତ୍ତ୍ୱପୂର୍ଣ୍ଣ ବ୍ୟବସ୍ଥାକୁ ଅନ୍ତରୀକ୍ଷରେ ପରୀକ୍ଷା କରିବା ଏବଂ ଲୋହିତ ଗ୍ରହ ଚାରିପଟେ ଘୂରି ଘୂରି ଏହାର ବାୟୁମଣ୍ଡଳ, ଭୂମିରୂପ ତଥା ଖଣିଜ ସମ୍ପଦ ସମ୍ପର୍କରେ ସର୍ବଶେଷ ଅନୁଧ୍ୟାନ କରିବା ।

**ଯନ୍ତ୍ରାବଳୀ :** ମଙ୍ଗଳଗ୍ରହର ବୈଜ୍ଞାନିକ ଅନୁସନ୍ଧାନ ନିମନ୍ତେ ଯାନରେ ଆଧୁନିକ ଜ୍ଞାନକୌଶଳରେ ନିର୍ମିତ ସମୁଦାୟ ୫ଟି ଯନ୍ତ୍ରାବଳୀ ସ୍ଥାନିତ ହୋଇଛି । ସେଥିରୁ ୩ଟି ଯନ୍ତ୍ର ଗ୍ରହର ବାୟୁମଣ୍ଡଳକୁ ଅନୁଧ୍ୟାନ କରିବା ନିମନ୍ତେ ଉଦ୍ଦିଷ୍ଟ ଥିବାବେଳେ ଗୋଟିଏ ଯନ୍ତ୍ର ମଙ୍ଗଳ ବାୟୁମଣ୍ଡଳ ମଧ୍ୟରେ ଥିବା ଚାର୍ଜିତ କଣିକା ଏବଂ ଅନ୍ୟ ଗୋଟିଏ ଯନ୍ତ୍ର ମଙ୍ଗଳ ପୃଷ୍ଠକୁ ଅନୁଧ୍ୟାନ କରିବ । ଯାନସ୍ଥିତ ଏହି ଯନ୍ତ୍ରଗୁଡ଼ିକ ସମ୍ପର୍କରେ ସୂଚନା ନିମ୍ନରେ ଦିଆଗଲା :

**ଲିମାନ୍ ଆଲ୍‌ଫା ଫଟୋମିଟର (Lyman Alpha Photometer) :** ଏହି ଯନ୍ତ୍ର ମଙ୍ଗଳର ଊର୍ଦ୍ଧ୍ୱ ବାୟୁମଣ୍ଡଳରେ ଉପସ୍ଥିତ 'ହାଇଡ୍ରୋଜେନ୍' ଓ ଏହାର ଅନ୍ୟତମ ଆଇସୋଟୋପ୍ 'ଡିଉଟେରିୟମ୍'ର ଆନୁପାତିକ ମୂଲ୍ୟ ଗଣନା କରିବ । ଏହା ଦ୍ୱାରା ଗ୍ରହପୃଷ୍ଠରୁ ଜଳର ଅପଚୟ ପ୍ରକ୍ରିୟା ଉପରେ ଆଲୋକପାତ ହୋଇପାରିବ ।

**ମିଥେନ୍ ସେନ୍ସର ଫର୍ ମାର୍ସ (Methane Sensor for Mars) :** ଏହି ଯନ୍ତ୍ର ମଙ୍ଗଳର ବାୟୁମଣ୍ଡଳରେ ଉପସ୍ଥିତ ମିଥେନ୍ ଗ୍ୟାସ୍‌ର ପରିମାଣ ତଥା ଏହାର ଉତ୍ସ ସମ୍ପର୍କରେ ନିର୍ଭୁଲ୍ ସୂଚନା ଦେବ ।

**ମାର୍ସ ଏକ୍ସୋସ୍ପେରିକ୍ ନିଉଟ୍ରାଲ କମ୍ପୋଜିସନ୍ ଆନାଲାଇଜର (Mars Exospheric Neutral Composition Analyser) :** ଏହା ମଙ୍ଗଳର ବାୟୁମଣ୍ଡଳ ମଧ୍ୟରେ ଉପଲବ୍ଧ କ୍ଷୁଦ୍ରାତିକ୍ଷୁଦ୍ର ଶକ୍ତିଶାଳୀ କଣିକାଗୁଡ଼ିକୁ ଠାବ କରିବା ନିମନ୍ତେ ଏକ ବର୍ଣ୍ଣାଳୀମାପକ ଯନ୍ତ୍ର ବା ମାସ୍ ସ୍ପେକ୍ଟ୍ରୋମିଟର । ଏହା ୧ରୁ ୩୦୦ 'ପରମାଣୁ ବସ୍ତୁତ୍ୱ ଏକକ' ପରିସରରେ ଥିବା କଣିକାଗୁଡ଼ିକର ବସ୍ତୁତ୍ୱ ଠିକ୍ ରୂପେ ନିର୍ଦ୍ଧାରଣ କରି ସେମାନଙ୍କ ଉପସ୍ଥିତିର ସୂଚନା ଦେଇପାରିବ ।

**ମାର୍ସ କଲର୍ କ୍ୟାମେରା (Mars Colour Camera):** ତିନୋଟି ବର୍ଣ୍ଣର ଆଲୋକରେ କାର୍ଯ୍ୟ କରିପାରୁଥିବା ଏହି କ୍ୟାମେରା ମଙ୍ଗଳର ଭୂମିରୂପ ଓ ଗଠନ ସମ୍ପର୍କରେ ଫଟୋଚିତ୍ର ଓ ତଥ୍ୟ ପ୍ରଦାନ କରିବ । ଏଥିରୁ ଗ୍ରହରେ ଘଟୁଥିବା ବାୟୁପ୍ରବାହ, ପାଣିପାଗ ତଥା ଅନ୍ୟାନ୍ୟ ପରିବର୍ତ୍ତନଶୀଳ ଘଟଣା ସମ୍ପର୍କରେ ସମ୍ୟକ୍ ସୂଚନା ମିଳିପାରିବ । ଏହି ଯନ୍ତ୍ର ମଧ୍ୟ ମଙ୍ଗଳ ଗ୍ରହର ଦୁଇଟି ଚନ୍ଦ୍ର ଯଥା ଡିମସ୍ ଓ ଫୋବସ୍ ଉପରେ ନଜର

ରଖିବ । ସୂଚନାଯୋଗ୍ୟ ଯେ ଏହି ଯନ୍ତ୍ର ହିଁ ଗତ ସେପ୍ଟେମ୍ବର ୨୮ ତାରଖ ଦିନ ମଙ୍ଗଳର ପ୍ରଥମ ଚିତ୍ର ଗ୍ରହଣ କରି ପୃଥିବୀକୁ ପ୍ରେରଣ କରିଥିଲା ।

**ଥର୍ମାଲ୍ ଇନ୍‌ଫ୍ରାରେଡ୍ ଇମେଜିଙ୍ଗ୍ ସ୍ପେକ୍ଟ୍ରୋମିଟର୍ (Thermal Infra-red Imaging Spectrometer):** ଦିନ ଓ ରାତିରେ କାର୍ଯ୍ୟ କରିପାରୁଥିବା ଏହି ଯନ୍ତ୍ର ଗ୍ରହପୃଷ୍ଠରୁ ବିକିରିତ ଅବଲୋହିତ ରଶ୍ମି (ତାପଶକ୍ତି)ର ପରିମାଣ ନିର୍ଭୁଲ୍ ରୂପେ ମାପିଥାଏ । ଏହି ଗଣନାରୁ ତାପଉତ୍ସର ତାପମାତ୍ରା ଉତ୍ସର୍ଜନଶୀଳତା **(Emissivity)** ସମ୍ପର୍କରେ ସୂଚନା ମିଳିପାରିବ । ମଙ୍ଗଳରେ ଗଚ୍ଛିତ ଅନେ ଖଣିଜ ଧାତୁର ତରଙ୍ଗ ଉତ୍ସର୍ଜନ ମୂଲ୍ୟ ଏହି ପରିସର ମଧ୍ୟରେ ରହୁଥିବାରୁ ଯନ୍ତ୍ରଟି ଆଗାମୀ ଦିନରେ ଲୋହିତ ଗ୍ରହର ବିପୁଳ ଖଣିଜ ସମ୍ପଦ ସମ୍ପର୍କରେ ସୂଚନା ଦେବ ବୋଲି ଆଶା ।

ଭାରତୀୟ ଅନ୍ତରୀକ୍ଷ ଯାନ 'ମଙ୍ଗଳଯାନ'ର ଏହି ସଫଳ ଅଭିଯାନ ପରେ ମନରେ ପ୍ରଶ୍ନ ଉଠେ, ସୌରଜଗତର ଅନ୍ୟ ଗ୍ରହସବୁ ଥାଉ ଥାଉ ବିଶେଷ କରି ମଙ୍ଗଳ ପ୍ରତି ମଣିଷର ଏତେ ଦୁର୍ବାର ଆକର୍ଷଣ କାହିଁକି ? ଜଳ ଓ ଜୀବନ ସତ୍ତାର ଉପସ୍ଥିତି ନିମନ୍ତେ ଲୋହିତ ଗ୍ରହ ମଙ୍ଗଳ ଯୁଗେ ଯୁଗେ ମଣିଷ ପାଇଁ ଏକ ରହସ୍ୟ ଓ ରୋମାଞ୍ଚଘେରା ସ୍ଥାନ ହୋଇ ରହିଆସିଛି ।

ଗ୍ରହଟି ଅନେକାଂଶରେ ଆମ ପୃଥିବୀ ଭଳି । ପୃଥିବୀ ଭଳି ଏହା ନିଜ ଅକ୍ଷ ଚାରିପଟେ ୨୪ ଘଣ୍ଟାରେ ଥରେ ଘୂରୁଥିବାରୁ ଏଠାରେ ମଧ୍ୟ ଦିନ ଓ ରାତିର ପରିବର୍ତ୍ତନ ଘଟେ । ପୃଥିବୀ ଭଳି ଅକ୍ଷର ଆନତ ହେତୁ ମଙ୍ଗଳରେ ମଧ୍ୟ ଋତୁ ପରିବର୍ତ୍ତନ ଘଟେ । ପୃଥିବୀ ଭଳି ମଙ୍ଗଳରେ ମଧ୍ୟ ଶ୍ୱାସ-ଉପଯୋଗୀ ବିଭିନ୍ନ ଗ୍ୟାସ୍‌ର ମିଶ୍ରଣ ଥାଇ ଏକ ବାୟୁମଣ୍ଡଳ ରହିଛି । ଜୀବନ ବଞ୍ଚି ରହିବା ପାଇଁ ସର୍ବପ୍ରଥମ ଆବଶ୍ୟକତା 'ଜଳ' । ବିପୁଳ ପରିମାଣରେ ମଙ୍ଗଳର ମେରୁରେ ବରଫାବୃତ ଶୃଙ୍ଗ ରୂପେ ଜଳ ମଧ୍ୟ ଗଚ୍ଛିତ ଅଛି । ସୁତରାଂ ମଙ୍ଗଳର ମୃଦୁ ତାପମାତ୍ରାରେ ଜୀବନ ବଞ୍ଚିବା ସମ୍ଭବପର ବୋଲି ମଣିଷର ବିଶ୍ୱାସ ।

ଦିନ ଆସିବ, ମଣିଷ ଅବକ୍ଷୟମୁଖୀ ଓ ମାଦକତାଶୂନ୍ୟ ନିଜର ଗ୍ରହ ପୃଥିବୀ ଛାଡ଼ି ରକେଟ୍‌ରେ ଉଡ଼ିଯିବ ଓ ମଙ୍ଗଳଗ୍ରହକୁ ନିଜର କ୍ରୀଡ଼ାଭୂମି ରୂପେ ଆପଣେଇନେବ । ଦଳଦଳ ସ୍ତ୍ରୀ, ପୁରୁଷ ଲୋହିତ ଗ୍ରହରେ ନିଜର ଘରସଂସାର ଗଢ଼ିବେ । ସେଥିପାଇଁ ସମ୍ଭବତଃ ଲୋହିତଗ୍ରହ ମଙ୍ଗଳ ପ୍ରତି ଆମର ଏତେ ଦୁର୍ବଳତା । ଭାରତୀୟ ଅନ୍ତରୀକ୍ଷ ଯାନ 'ମଙ୍ଗଳଯାନ'ର ମଙ୍ଗଳ ଅଭିଯାନ ମଣିଷର ଏହି ସୁଦୂର ସ୍ୱପ୍ନର ପୂର୍ବାଭାସ !

*ଆଞ୍ଚଳିକ ବିଜ୍ଞାନ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର*

---



ପଡ଼ୋଶିନୀ– ତୁମ ଥାକ ସାରା ବହି ଭର୍ତ୍ତି ହୋଇଛି । ସେ ଭିତରୁ କେଉଁ ବହିଟି ତୁମର ସବୁଠୁଁ ବେଶୀ ପସନ୍ଦ ?

ମହିଳା– ମୋ ପସନ୍ଦର ବହିଟା ଥାକରେ ନାହିଁ, ଲକର ଭିତରେ ଅଛି ।

ପଡ଼ୋଶିନୀ– ଲକର ଭିତରେ............ ?

ମହିଳା– ହଁ, ସେଇଟି ହେଉଛି ମୋ ସ୍ୱାମୀଙ୍କ ଚେକ୍‌ବୁକ୍ ।

ଚିତ୍ରକରଙ୍କ ବନ୍ଧୁ ପ୍ରଦର୍ଶନୀ ଦେଖି ଫେରିଥାଆନ୍ତି । ତାଙ୍କୁ ଚିତ୍ରକର ପ୍ରଶ୍ନ କଲେ– ଆପଣ ମୋ ଚିତ୍ରଟି ଦେଖିଲେ । କେମିତି ହୋଇଛି ?

ବନ୍ଧୁ – ଚମତ୍କାର ! ସେ ଦରଭଜା ଆମ୍ଲେଟ୍ ତ !

ଚିତ୍ରକର – ଆମ୍ଲେଟ୍ ? ହେ ଭଗବାନ୍ ! ସେଇଟା ଯେ ଅସ୍ତଗାମୀ ସୂର୍ଯ୍ୟଙ୍କର ଚିତ୍ର !



**ଜନଶ୍ରୁତି - ଆମର ଭଗଡମାଳି**

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

## ବୁଦ୍ଧୁରୁ .... ବାବୁ ବୁଦ୍ଧୁରାମ

ଗୋଟିଏ ଗାଁ'ରେ ଜଣେ ଚାଷୀ ଥିଲା, ନା' ତା'ର ବୁଦ୍ଧୁ । ଘରେ ତା'ର ସ୍ତ୍ରୀ ଏବଂ ପାଞ୍ଚଟି ପୁଅଝିଅ । ବୁଦ୍ଧୁ କାମଦାମ କରି ବେଶୀ ଫସଲ ଓ କିଛି ଧନ କମାଇବାକୁ ଚାହେଁ; ମାତ୍ର ତା' ଭାଗରେ ଜମି ପଡ଼ିଛି କମ୍ । ସେତିକରୁ ଯାହା ଉତ୍ପନ୍ନ ହୁଏ, ତାହା ପିଲାଛୁଆଙ୍କୁ ପାଇଁ ଯଥେଷ୍ଟ ହୁଏ ନାହିଁ । ସେଇ ଆମଦାନୀରୁ କିଛି ବଳିଲେ ସିନା ବିକ୍ରି କରିବ ! ଦିନେ ତା' ସ୍ତ୍ରୀ ପରାମର୍ଶ ଦେଲା, ''ଚାଲ, କଖାରୁ ଲଗାଇବା । ଅଳ୍ପ ପରିଶ୍ରମରେ ବହୁ କଖାରୁ ହେବ ଓ ଆମେ ସେସବୁକୁ ବିକିପାରିବା, କିଛି ପଇସା ତ ଘରକୁ ଆସିବ ।''

ଯା'ହେଉ ଗତବର୍ଷରୁ ରହିଥିବା କିଛି ମଞ୍ଜିକୁ, ଜାଗା ଠିକ୍ କରି ସେଗୁଡ଼ିକୁ ପୋତି ଦିଆଗଲା । ଠିକ୍ ଯତ୍ନ ଓ ପାଣି ପାଇ କଖାରୁ ଗଛଗୁଡ଼ିକ ଶୀଘ୍ର ଶୀଘ୍ର ବଢ଼ିଲେ । ପିଲାମାନେ ନିଘା ରଖିଲେ ଯେପରି ମୂଷା ଆସି କାଟି ନ ଦିଏ ବା ଦିନବେଳା ମାଙ୍କଡ଼, ଛେଳି ବାଡ଼ିରେ ନ ପଶନ୍ତି । ଫଳ ବି ଏତେ ଫଳିଲା ଯେ ଗଣି ହେବ ନାହିଁ । ଦେଢ଼ ମାସ, ଦୁଇ ମାସରେ ସେଇ ପଡ଼ିଆ ଖଣ୍ଡକ ହଳଦିଆ ସୁନା ରଙ୍ଗର ଛୋଟବଡ଼ କଖାରୁରେ ଭରିଗଲା । ଏତେ ଲୋଭନୀୟ ଥିଲା ଯେ ସବୁବେଳେ ପହରା ଦେବାକୁ ପଡୁଥିଲା । ସେଗୁଡ଼ିକ ମଧ୍ୟରୁ ପନ୍ଦରଟି ବଡ଼ ବଡ଼ କଖାରୁ ବାଛି ବୁଦ୍ଧୁ ବଜାରକୁ (ସହର) ନେବାକୁ ବାହାରିଲା କାନ୍ଧରେ ଭାର କରି ।

ତା'ପରଦିନ ସକାଳୁ ସକାଳୁ ସେ ଯାଇ ପହଞ୍ଚିଲା ବଜାରର ମଝିଆମଝି । ତା'ର କଖାରୁଗୁଡ଼ିକ ବେଶ୍ ଦର୍ଶନୀୟ ଥିଲା । ଗୋଟିଏ ପୁରୁଣା ଚାଦର ବିଛାଇ ତା' ଉପରେ କେତୋଟି ଓ ବାକିତକ ବୋଝରେ ରଖି ଭଲକରି ଜମାଇ ବସିଲା ଓ ଖରିଦ୍‌ଦାରଙ୍କ ପାଇଁ ଅପେକ୍ଷା କଲା । ମଝିରେ ମଝିରେ ସେ ନିଜ କଖାରୁର ତାରିଫ୍ କରୁଥାଏ ଲୋକଙ୍କୁ ଶୁଣାଇ ଶୁଣାଇ । କହୁଥାଏ, "ଏହିସବୁ ବାଡ଼ିରୁ ଆସିଥିବା ସଜ ପରିବାପତ୍ରରେ ସ୍ୱାଦୁ ଓ ସେଗୁଡ଼ିକର ଉପାଦେୟତା କେତେ, ସେ କଥା ଚାଖିଲେ ସିନା ଜାଣିବ !"

ସେ ତ ଆଗରୁ କେବେ ସହରର ବଜାରହାଟ ଦେଖି ନ ଥିଲା । କିଛି ସମୟ ପରେ ନଜର ପଡ଼ିଲା ବେଶ୍ ମଜଭୁତ୍ ଲୋକଟିଏ ତା' ଆଡ଼କୁ ଆସୁଛି । ତା' ପଛେ ପଛେ ତିନି ଚାରିଜଣ ଗୁଣ୍ଡା ପ୍ରକୃତିର ଲୋକ ମଧ୍ୟ । ବୁଦ୍ଧୁ ଖୁସି ହୋଇଗଲା, ଭାବିଲା ଅଳ୍ପ ସମୟରେ କଖାରୁଗୁଡ଼ିକ ବିକ୍ରି ହୋଇଯିବ । 'କେତୋଟି ନେବେ ଆଜ୍ଞା ?' ବୁଦ୍ଧୁ ପଚାରିଲା । ସେ କହିଲେ, "ମୁଁ କଣିବି ? ମୁଁ ଟିକସ ଆଦାୟ କରେ, ରାଜାଙ୍କର ଲୋକ । ତାଙ୍କ ଟିକସ ଦିଅ, ତାଙ୍କ ବଜାରରେ ବସି ବିକୁଛ, ତାଙ୍କୁ ତାଙ୍କ ଟିକସ ଦେବନି ?" ସେ ଏ କଥା କହୁ କହୁ ତା' ପଛରେ ଥିବା ଲୋକ ମୁଥ ମାରିବା ପାଇଁ ଆଗେଇ ଆସିଲେ ।

ବୁଦ୍ଧୁ ତ ଏଠାକୁ କେବେ ଆସିନି, ସେ ବା କାହୁଁ ଜାଣିବ ଟିକସ କଥା ଆଉ ସେ ଲୋକମାନଙ୍କ କଥା ! ଭାବିଲା ସତରେ ରାଜାଙ୍କୁ ନେଇ ଟିକସ ଦେଉଥିବେ ଏଠାକାର ଦୋକାନଦାରମାନେ । ତହୁଁ ସେ ତରତର ହୋଇ ସେମାନଙ୍କ ହାତକୁ କଖାରୁଟିଏ ବଢ଼ାଇଦେଇ କହିଲା, "ଆଜ୍ଞା ! ଏଇ ତ ଆସିଛି ବଇନି କରିନି । ପଇସା ବଦଳରେ କଖାରୁଟିଏ ନିଅନ୍ତୁ ।"

କିଛି ସମୟ ଚାଲିଗଲା । ଆଉ ଜଣେ ଭଦ୍ରଲୋକ ବେଶ୍ ଦାମୀ ପରିଚ୍ଛେଦରେ ଆବୃତ ହୋଇ ସାଙ୍ଗରେ ଠେଙ୍ଗାବାଲା ୨/୪ ଜଣ ଧରି ବେପାରୀଙ୍କୁ ଧମକାଇ ଟିକସ ଆଦାୟ କରି କରି ବୁଦ୍ଧୁ ପାଖରେ ପହଞ୍ଚିଲେ । ପଚାରିଲେ– ସରକାରଙ୍କ ଟିକସ ଦିଆହୋଇଛି କି ? ବୁଦ୍ଧୁ ତାଙ୍କୁ ବୋକାଙ୍କ ପରି ଚାହିଁଲା– "ଏତେ ଟିକସ ଦେବାକୁ ପଡ଼େ, ମୁଁ ତ ଜାଣେ ନାହିଁ । ହଉ, ବିକ୍ରି ହବା ଆଗରୁ ଟିକସ ବାବତ କ'ଣ ଆଉ ଦେବି, ଆଜ୍ଞା ଆପଣେ କହୁଛନ୍ତି ଯଦି ଏଇ ଗୋଟିକ କଖାରୁ ନେଇଯା'ନ୍ତୁ ।" କହି ବୁଦ୍ଧୁ କଖାରୁଟିକୁ ସେମାନଙ୍କୁ ବଢ଼ାଇଦେଲା ।

ଏମିତି ଏମିତି ନାନା ଟିକସବାଲା ଆସି ଗୋଟିଏ ପରେ ଗୋଟିଏ ପାଚିଲା କଖାରୁ ନେଇଗଲେ; ବୁଦ୍ଧୁ ଗୋଟାଏ ବି କଖାରୁ ବିକିପାରିଲା ନାହିଁ । ଏବେ ତା'ର ଘରକୁ ଫେରିବା ଛଡ଼ା ଅନ୍ୟ ଉପାୟ ନାହିଁ । ସେ ପନ୍ଦରଟିଯାକ ବଡ଼ ବଡ଼ କଖାରୁର ଗୋଟିଏ ବି ପଇସା ପାଇଲା ନାହିଁ । ଅର୍ଥାତ୍ ସମସ୍ତ କଖାରୁ ଟିକସ ଦେବାରେ ଚାଲିଗଲା ।

ମନଦୁଃଖରେ ଭୋକ ଉପାସରେ ସେ ବସିବା ଜାଗାରୁ ଉଠି ପାରିଥିବା ଲୁଗା ଉଠାଇଛି, ଷୋଡ଼ଶ ଟିକସ ଆଦାୟକାରୀ ଆସି ପହଞ୍ଚିଗଲା । କହିଲା, ''ଏହି ବଜାରରେ ବିକିଲ, ବଜାରର ଟିକସ ନ ଦେଇ ଯାଇପାରିବ ନାହିଁ । ମୁଁ ବଜାରର ପରିଚାଳକ, ମୋ ପାଉଣା ମତେ ଦିଅ । ତା' ନ ହେଲେ ଆମର ଯିଏ ବଡ଼କର୍ତ୍ତା, ସେ ମୋ' ଠାରୁ ଆଦାୟ କରିବେ । ଆସ, ଆସ ଆମ ଅଫିସକୁ ।" ପିଆଦା ଦୁହେଁ ବୁଦ୍ଧୁକୁ ଏକପ୍ରକାର ଠେଲି ଠେଲି ଗୋଟାଏ ଦପ୍ତରକୁ ନେଇଗଲେ । ସର୍ବସ୍ୱ ହରାଇ ବୁଦ୍ଧୁ ଗାଁ'କୁ ସଅଳ ଫେରିଲା ।

ଶେଷରେ ବୁଦ୍ଧୁ ଘରମୁହାଁ ହେଲା । ପିଲାମାନେ କେଡ଼େ ଆଗ୍ରହରେ ଚାହିଁ ବସିଛନ୍ତି କେତେବେଳେ ବାପା ଫେରିବେ ସହରରୁ । ଆମ ପାଇଁ କ'ଣ କ'ଣ ସବୁ ଭଲ ଭଲ ଜିନିଷ ଆଣିଥିବେ । ସ୍ତ୍ରୀ ମଧ୍ୟ ଅପେକ୍ଷା କରିଛି, ତା'ର ଏତେ ଯତ୍ନର କଖାରୁ, ସେଥିରୁ କେତେ ଆମଦାନୀ ହେଲା ଜାଣିବା ପାଇଁ; ମାତ୍ର ବୁଦ୍ଧୁ ଫେରିଲା– ଶୁଖିଲା ମୁହଁ, ଭୋକିଲା ପେଟ ଓ ଖାଲି ହାତରେ । ପିଲାମାନେ ନିରାଶ ହେଲେ, ସ୍ତ୍ରୀ-ସ୍ୱାମୀର ମୁହଁକୁ ଚାହିଁ ନିରବ ହେଲା । ବୁଦ୍ଧୁ ଗୋଟେ ଆସାମୀ ପରି ତଳକୁ ମୁହଁ ପୋତି ଥକ୍କା ହୋଇ ବସିପଡ଼ିଲା ଓ ଆଜି ଦିନକରେ ଯାହା ଯାହା ଘଟିଲା, ଗୋଟି ଗୋଟି କରି ସବୁ ବଖାଣିଗଲା ।

ସ୍ୱାମୀ-ସ୍ତ୍ରୀ ଦୁହେଁଯାକ ମୁହଁ ଶୁଖାଇ କିଛି ସମୟ ବସିରହିଲେ । ଶେଷରେ ହଠାତ୍ ବୁଦ୍ଧୁର ସ୍ତ୍ରୀ ବୁଦ୍ଧୁକୁ କହିଲା, "ମୁଁ ଗୋଟାଏ ଉପାୟ ପାଇଛି । କାଲି ସକାଳେ ସେହିପରି କରିବ, ଯେପରି ମୁଁ କହିବି ।" ପରଦିନ ସକାଳୁ ଶୀଘ୍ରଉଠି ନିତ୍ୟକର୍ମ ଇତ୍ୟାଦି ସମସ୍ତ କାମ ସାରି ବୁଦ୍ଧୁକୁ ତା' ସ୍ତ୍ରୀ ଗୋଟାଏ ପଦସ୍ଥ କର୍ମଚାରୀ ପରି ସଜାଇଲା । ଭଲ ଧୋତି ପିନ୍ଧାଇଲା, ତା' ଉପରେ ପୂରା ହାତ କୁର୍ତ୍ତା, ମୁହଁଟି ସଫାସୁତୁରା । ପୁରୁଣା ଜରିଦିଆ ଶାଢ଼ୀକୁ ଚଉଡେଇ ମୁଣ୍ଡରେ ପଗଡ଼ି ବାନ୍ଧିଦେଲା ଓ ତା'ପରେ ଚଢ଼େଇର ଲମ୍ବା ପରଟିଏ ଲଖେଇ ଦେଲା– ଏବେ ସତରେ ଦପ୍ତରର ହାକିମ ପରି ଲାଗିଲା । ସେ ଆଗେ ଆଗେ, ତା'ପଛରେ ଗାଁ'ର ନାମକରା ଗୁଣ୍ଡା ଚାରିଜଣ ବଡ଼ ବଡ଼ ଲାଠିଧରି ବୁଦ୍ଧୁର ଦୁଇ ପାଖରେ ଓ ପଛରେ ଦେହରକ୍ଷୀ ପରି ବଜାରକୁ ବାହାରିଗଲେ ।

ବୁଦ୍ଧୁର ଚାଲିବାର ଠାଣି ବି ବଦଳିଗଲା । ନାଗରା ଜୋତା, ଛାତି ଉପରେ ହାତକୁ ହାତ ଛନ୍ଦି ନିଶକୁ ଦୁଇପାଖରେ ବାଗେଇଦେଲା । ଯେତେସବୁ ଦୋକାନହାଟ ବସିଥିଲା, ସେଠାକୁ ତା'ର କର୍ମଚାରୀ ଭାବେ ତା' ପାଖରେ ଥିବା ଗୁଣ୍ଡା ମଧ୍ୟରୁ ତିନିଜଣଙ୍କୁ ପଠାଇ ନିଜର ପରିଚୟ କରାଇଦେଲା– ସ୍ୱୟଂ ରାଣୀମା'ଙ୍କର ମାଉସୀପୁଅ ଭାଇ, ରାଣୀଙ୍କ ତରଫରୁ ଟିକସ ଆଦାୟ କରିବାକୁ ଆସିଛନ୍ତି । ବେପାରୀମାନେ ରାଣୀଙ୍କ ତରଫରୁ କର ଆଦାୟ କଥା ଶୁଣି ନ ଥିଲେ । ଏତେଗୁଡ଼ାଏ ଟିକସ ଦେଇସାରିବା ପରେ ପୁଣି ଆଉ ଗୋଟିକରେ ନୂଆ ଟିକସ ଦେବାକୁ ବହୁତ କୁନ୍ଥୁ କୁନ୍ଥୁ ହେଲେ । ବୁଦ୍ଧୁ ଜଣାଇଦେଲା, "ଯେଉଁମାନେ ଏବେ ରାଣୀଙ୍କର ପ୍ରାପ୍ୟ ନ ଦେବେ, ତାଙ୍କ ନାମ ଠିକଣା ଲେଖିଦିଅ, ରାଣୀ ନିଜେ ଡକାଇ ଯାହା ଶାସ୍ତି ଦେବେ ।" ସେମାନଙ୍କ ଭିତରୁ ଜଣେ ଟିକିଏ ଭଦ୍ରପୋଷାକଧାରୀ ବେପାରୀଙ୍କ ନାମ, ଧାମ ଆଦି ପଚରାପଚରି କଲା । ବେପାରୀମାନେ ଶାସ୍ତି ଭୟରେ ରାଣୀଙ୍କ ପ୍ରାପ୍ୟ ଭାବରେ ଯିଏ ଯାହା ପାରିଲା ଦେଲା– ଅର୍ଥ ଆକାରରେ ହେଉ ଅବା ଜିନିଷ ଆକାରରେ ହେଉ ।

କିଛିଦିନ ବୁଦ୍ଧୁର ଏମିତି କାମ ଚଳିଗଲା, ଗୁଜୁରାଣ ମେଣ୍ଟିଲା; ମାତ୍ର ବେପାରୀମାନେ ତ ପୂର୍ବରୁ ହିଁ କର ଭାରରେ ନଇଁପଡ଼ିଥିଲେ, ସାହସ ନ ଥିଲା ରାଜ-ଦରବାରରେ ଗୁହାରି କରିବା ପାଇଁ । ଏବେ ପୁଣି ଆଉରି ଗୋଟାଏ ନୂଆ ଟିକସ । ନା ଆଉ ପାରି ହେବନାହିଁ । ବହୁ ବେପାରୀ ଏକଜୁଟ୍ ହୋଇ ଏଇ ସବୁ କର ଆଦାୟକାରୀଙ୍କ ବିରୋଧରେ ରାଜାଙ୍କ ପାଖରେ ନାଲିସ କଲେ ।



ରାଜା ବେଶି ପୁରୁଣା ନୁହଁନ୍ତି । ରାଜ୍ୟର ପ୍ରଜାମାନଙ୍କର ହାଲ୍‌ଚାଲ୍ ସେତେ ଭଲଭାବେ ଜାଣି ନଥିଲେ; ତଥାପି ସେ ତାଙ୍କର ଗୁପ୍ତଚର ନିଯୁକ୍ତ କରି ରାଜାଙ୍କ ନାଁ'ରେ ଓ ଶାସକ ସରକାରଙ୍କ ନାଁ'ରେ ପ୍ରଜାଙ୍କୁ ଯେତେପ୍ରକାର ଲୁଟ୍‌ତରାଜ ହୋଇଛି, ତା'ର ଖବର ନେଇ ସେମାନଙ୍କୁ ଧରିଆଣିଲେ । ସେମାନଙ୍କ ଭିତରେ ବୁଦ୍ଧୁ

ବି ଧରାହୋଇ ଦରବାରକୁ ଆସିଲା । ସମସ୍ତଙ୍କୁ ପଚରାଉଚୁରା କଲାପରେ ଶାସ୍ତିର ବ୍ୟବସ୍ଥା ଜଣାଇଲେ । ଏଥର ବୁଦ୍ଧୁର ପାଳି ପଡ଼ିଲା । ରାଜା ପଚାରିଲେ– "ଶୁଣିଲି, ତୁମେ ରାଣୀଙ୍କର ଭାଇ ବୋଲି ପରିଚୟ ଦେଇ ଗୋଟାଏ କ'ଣ ନୂଆ ଟିକସ ଆଦାୟ କରୁଥିଲ – ନାଁ ଦେଇଛ 'ରାଣୀଙ୍କ ଟିକସ' । ମୋର ତ ବିବାହ ହୋଇନାହିଁ, ରାଣୀ ନ ଥାଇ ମଧ୍ୟ ତାଙ୍କ ନାଁ'ରେ ଟିକସ – ଏ ତ ଅଦ୍ଭୁତ କଥା ! ତୁମେ କିଏ ? ତୁମ ନାମଧାମ କ'ଣ ? ଏ ଅଭିନବ ଉପାୟଟି କେଉଁଠୁ ଶିଖିଲ ଓ ବେଶ୍ ଚତୁରତାର ସହିତ ଚଳାଇଲ ।"

ବୁଦ୍ଧୁ ତ ସୁଯୋଗ ଖୋଜୁଥିଲା; କିନ୍ତୁ ଜୁଟାଇ ପାରୁ ନ ଥିଲା । କହିଲା, "ଆଜ୍ଞା ମଣିମା, ଅଭୟ ଦେଲେ କହିବି । ମୁଁ ଗୋବିନ୍ଦ ତୋଟା ଗାଁ'ର ଜଣେ ଛୋଟିଆ ଚାଷୀ, ନାଁ ମୋର ବୁଦ୍ଧୁରାମ । ବାଡ଼ିବଗିଚାରେ ଯେଉଁ ସାମାନ୍ୟ ପନିପରିବା ହୁଏ, ତାକୁ ବିକି ଚଳେ । ହାଟକୁ ଅଧିକ ଦୁଇପଇସା ଆସିବ ବୋଲି ମୋ ସ୍ତ୍ରୀ ମୋତେ ସହରକୁ ପଠାଇଲା । ଏକଥା କହିବା ପରେ ସହରରେ କଖାରୁ ବିକ୍ରି କରିବାକୁ ଆସି ଯାହା ଯାହା ସବୁ ଘଟିଥିଲା, ଯେପରି ହନ୍ତସନ୍ତ ହୋଇଥିଲା, ସେ କଥା ନରମି ନରମି କହିଲା । ଭୋକଉପାସରେ ଖାଲି ହାତରେ କେମିତି ଘରକୁ ଫେରିଥିଲା, ସେ କଥା ବି ଜଣାଇଲା । ଆଙ୍ଗୁଳି ଦେଖାଇ ଯେଉଁମାନେ ରାଜାଙ୍କ ଟିକସ ନାଁ'ରେ ତା'ଠାରୁ ସବୁତକ କଖାରୁ, ଏପରିକି ପଗଡ଼ି ଓ ଟୋକେଇ ନେଇଯାଇଥିଲେ, ସେମାନଙ୍କୁ ଚିହ୍ନଟ କରି ଦେଖାଇଦେଲା । ତା'ପରେ କହିଲା, "ମନଦୁଃଖରେ ଭୋକଉପାସରେ ଘରେ ସ୍ତ୍ରୀ ପିଲାଙ୍କୁ ନେଇ ବସିଥିଲାବେଳେ ମୋ ସ୍ତ୍ରୀ ଏଇ ଉପାୟଟି ବତାଇଲା । ଏଇ ଟିକସ ଆଦାୟ ବେପାରରେ ମୁଁ ନୂଆ ଢୁକିଛି । ଟିକସ ନାଁ'ରେ ଆଜ୍ଞା ହଜୁରଙ୍କ ନାଁ' ନେଇ ଏଇ ଟିକସ ଆଦାୟକାରୀଙ୍କ ଖବର ଆପଣଙ୍କୁ ଜଣାଇବା– ମୋ ସ୍ତ୍ରୀର ପରାମର୍ଶ ଥିଲା । ସେ ବୁଝିପାରିଥିଲା, ଏମାନେ ସମସ୍ତେ ମିଛୁଆ, ଜୁଆଚୋର, କେବେହେଲେ ବି ଆପଣଙ୍କ ଦ୍ୱାରା ନିଯୁକ୍ତ ହୋଇ ନ ଥିବେ ବୋଲି ମୋ ସ୍ତ୍ରୀ ମୋତେ ବତାଇଲା ।

ଯା' ହେଉ ରାଣୀଙ୍କ ନାଁ'ରେ ଟିକସ ଆଦାୟ କରିବା ଯଦିବା ଏକ ବଡ଼ ଅପରାଧ; ତଥାପି ସେଦିନରୁ ଆମ ଘରେ କିଛି ଖାଦ୍ୟ ମିଳୁଛି । ଆପଣ ହଜୁର ଯାହା ବିଚାର କରି ମୋତେ ଦଣ୍ଡବିଧାନ କରନ୍ତୁ, ମୋର ତ ଅନ୍ୟ ଉପାୟ ନ ଥିଲା ।''

ରାଜା ଥିଲେ ଦୟାବନ୍ତ । ବୁଦ୍ଧୁର ବିବୃତିରୁ ପୂରା ଚିତ୍ରଟି ତାଙ୍କ ସାମ୍ନାକୁ ଆସିଗଲା । ରାଜା ଘୋଷଣା କଲେ, "ରାଜ୍ୟରେ ମାତ୍ର ଗୋଟିଏ ଟିକସ ଲାଗୁ ହେବ – ଯାହା ହେବ ରାଜସରକାର ତରଫରୁ । ଆମଦାନି ଅନୁସାରେ ବେପାରୀଙ୍କ ଠାରୁ ଟିକସ ଆଦାୟ ହେବ । କାହାରି ମୂଳଧନରେ ଆଞ୍ଚ ଆସିବ ନାହିଁ । ରାଜାଙ୍କ ନାଁ'ରେ କେହି ଅଲଗା ଟିକସ ଆଦାୟ କଲେ କଠୋର ଦଣ୍ଡ ମିଳିବ । ଜାଲ୍ ଟିକସ ଆଦାୟକାରୀଙ୍କର ସ୍ୱତନ୍ତ୍ର ବିଚାର ହେବ ।"

ବାବୁ ବୁଦ୍ଧୁରାମଙ୍କଠାରୁ ଏସବୁ ସମ୍ବାଦ ମିଳିଥିବାରୁ ତାଙ୍କୁ ଡକାଇ କହିଲେ, "ଏବେଠାରୁ ଟିକସ ଆଦାୟ ବିଭାଗର ତୁମେ ହେବ ଅଧିକର୍ତ୍ତା, ତୁମକୁ କେତେକ କର୍ମଚାରୀ ଦିଆଯିବ । ସହରରେ ଆସି ବସବାସ କର । ଦେଖ, ପୂରା ଉତ୍ତରଦାୟିତ୍ୱ ତୁମର ।"

ଅତଏବ, କୌଣସି କାରଣରୁ ବୁଦ୍ଧୁର ସରଳତା ଓ ତା' ସ୍ତ୍ରୀର ବୁଦ୍ଧିମତ୍ତା ରାଜାଙ୍କୁ ଭଲଲାଗିଥିଲା । ତଣ୍ଟେ ସେ ଭାବିଲେ– ଏପରି ଜଣେ ସାଦାସିଧା ସରଳ ଲୋକଙ୍କୁ ଶିଖାଇ ପଢ଼ାଇଦେଲେ ଓ ପାଖରେ ରଖିଲେ ତା'ର ବିଶ୍ୱସ୍ତତା ବଢ଼ିବ, କିଛି ଅବ୍ୟବସ୍ଥା ଶାସନ ବ୍ୟବସ୍ଥାରୁ ଦୂର ହେବ ।

ସେହିଦିନୁ ବୁଦ୍ଧୁ ହୋଇଗଲା 'ବାବୁ ବୁଦ୍ଧୁରାମ' ।

*ରାଜାବଗିଚା, କଟକ-୯*



# ହସି ହସି ମୁହିଁ ଯାଏ ଗଡ଼ି

ଶ୍ରୀ ନଟବର ସାହୁ

ନାଆଁ ମୋର ଅଟେ ଶୂନ୍‌ଗାଡ଼ି
କିଏ ଦେଇଥିଲା ମୋତେ ଗଢ଼ି
ଘିରି ଘିରି କରି ଚକ ଦୁଇଟା ମୋ
ପାଣି ପରି ଯାଏ ଗଡ଼ି ଗଡ଼ି ।
ମୋ ଚକେ ପବନ ଦେଲେ ଭରି
ଦେହେ ମୋ ଶକତି ଆସେ ଫେରି
ମୋ ଉପରେ ଚଢ଼ି ଅଫିସ୍ କଚେରୀ
ଯାଅ ବାବୁ ତୁମେ ନିଶ ମୋଡ଼ି ।
କାଦୁଅ ପାଣିକୁ ମୋର ଡର
ଅଟକିଯାଏ ତ ଚକ ମୋର
ଶୁଖିଲା ପାଗରେ କଚ୍ଚା ପକ୍କା ରାସ୍ତା
ଦେଖି ମନ ଇଚ୍ଛା ଯାଅ ଚଢ଼ି ।
ସହର ବଜାର ମଫସଲ
ମୋ ଉପରେ ଚଢ଼ି ଲୋକପଲ
କିଏ ଲଦି ମାଲ୍ କେ ଦେଖାଏ ଖେଳ
କିଏ ଅବା ଯାଏ ପାଠ ପଢ଼ି ।
ମୁହିଁ ତ ଅଟେ ସ୍ୱାଧୀନ ଗାଡ଼ି
ମଟର ଯାଏ ପେଟ୍ରୋଲ୍ ପୋଡ଼ି
ମଟର ସାଇକେଲ ମୋ ପରେ ଜନମ
ପେଟ୍ରୋଲ ସରିଲେ ରହେ ପଡ଼ି ।
ସବୁ କାମେ ଆଜି ମୋତେ ଖୋଜା
ଅମିର ଗରିବ ଅବା ରଜା
ମଣିଷ ସେବାରେ ଦିନରାତି ସଦା
ହସି ହସି ମୁହିଁ ଯାଏ ଗଡ଼ି ।

*ଏଲ୍-୩୮, ବରମୁଣ୍ଡା, ଭୁବନେଶ୍ୱର* ❋❋

---

# ଗୁରୁଜନଙ୍କୁ ସମ୍ମାନ ଦେବାର୍ କେତୋଟି ପଥ

☆ ତାଙ୍କର ଗର୍ବ ଓ ଗୌରବକୁ ସମ୍ମାନ ଦିଅ, ଯେତେବେଳେ କି ସେମାନେ ନିଜକୁ ତାହାର ଯୋଗ୍ୟ ବୋଲି ଭାବନ୍ତି ନାହିଁ ।

☆ ତାଙ୍କ ସାମ୍ନାରେ ଗୋଡ଼ ଟେକି ବସନାହିଁ ବା ପଛକରି ବସନାହିଁ ।

☆ ଯଦି ତାଙ୍କ ବିଷୟରେ କେହି ମନ୍ଦକଥା କହୁଛି, ତମେ ସେଥିରେ ଭାଗ ନିଅନାହିଁ ।

☆ ତୁମେ ତାଙ୍କପାଇଁ କ୍ଲାନ୍ତ ଓ ବ୍ୟସ୍ତ ଅନୁଭବ କଲ ବୋଲି ତାଙ୍କୁ ଦେଖାଅ ନାହିଁ ।

☆ ତାଙ୍କ ଭୁଲ୍ ଦେଖି ହସ ନାହିଁ ।

☆ ସେମାନେ କହିବା ପୂର୍ବରୁ ତାଙ୍କର କାର୍ଯ୍ୟ କରିଦିଅ ।

☆ ବାରମ୍ବାର ତାଙ୍କ ଅବସ୍ଥା ଓ ତାଙ୍କର ଆବଶ୍ୟକତାକୁ ନଜର ରଖିବା ପାଇଁ ତାଙ୍କ ନିକଟକୁ ଯାଅ ।

☆ ସବୁ କଥାର ଉର୍ଦ୍ଧ୍ୱରେ ସେମାନଙ୍କୁ ରଖିବାକୁ ଚେଷ୍ଟା କର । ❋❋

# ଜେଜେଙ୍କ କୁନି ଲିନାମା

କୁମାରୀ ସୁଚିତ୍ରା ସାହୁ

ଲିନା ପାଞ୍ଚସାତ ବର୍ଷର ଛୋଟ ଝିଅଟିଏ । ସିଏ ଥିଲା ଭାରି ଚୁଲବୁଲୀ ଆଉ ତା ଗୁଲୁଗୁଲିଆ କଥାରେ ସତେ ଯେମିତି ସବୁରି ହୃଦୟ ମୋହି ନେଉଥିଲା । ଲିନା ସେଦିନ ମା'ଙ୍କ ସହିତ ମନ୍ଦିର ଯାଉଥାଏ, ଅକସ୍ମାତ୍ ଝୁଣ୍ଟି ପଡ଼ିଲା । ଆଉ ଲିନା ପଡ଼ିବା ଆଗରୁ ତା'ର ଦୁଇ ହାତକୁ ଧରି ସମ୍ଭାଳି ନେଲେ ମା' । ଝାଡ଼ିଝୁଡ଼ି ଦେଇ ତାକୁ ନାନା ପ୍ରବୋଧନା ମାଧ୍ୟମରେ ବୁଝାଇଦେଲେ । କିଛି ସମୟ ପରେ ଲିନା ବି ବୁଝିଗଲା ଓ ତା ମା' ହାତ ଧରି ଆଗକୁ ଆଗକୁ ମନ୍ଦିର ଅଭିମୁଖେ ଯାତ୍ରା କଲା ।

ହଠାତ୍ ମନ୍ଦିର ସାମନାରେ ସେ ମା'ର ହାତ ଛାଡ଼ିଦେଲା । ତା'ର ଦୃଷ୍ଟି ପଡ଼ିଲା ତା' ପରି ଛୋଟ ପିଲାଟିଏ ହାତରେ ଭଙ୍ଗା ଥାଳିଟିଏ ଧରି ମନ୍ଦିରକୁ ଆସୁଥିବା ବାବୁ-ମା'ମାନଙ୍କୁ ଭିକ୍ଷା ମାଗୁଥାଏ ।

କିନ୍ତୁ ବାବୁ-ମା'ମାନେ ବିଭିନ୍ନ ଆଳରେ ତଡ଼ି ଦେଉଥାନ୍ତି ।

ଏସବୁ କିନ୍ତୁ ଲିନାକୁ ଭାରି କଷ୍ଟ ଦେଲା । ଏଇନେ ତା'ମା ତାକୁ ପଡ଼ିବା ଆଗରୁ ଧରିନେଲା, ହେଲେ ଏ ପିଲାକୁ କିଛି ପଇସା ଦେବା ପରିବର୍ତ୍ତେ ଏ ବାବା-ମା'ମାନେ ତାକୁ ଏମିତି ତଳେ ପକାଇ ପଳାଇ ଯାଉଛନ୍ତି କାହିଁକି..... ?

ମନ୍ଦିର ସାମନାରେ କେତେ ଲୋକଙ୍କ ଭିଡ଼ ଜମି ରହିଥିଲା । କାହାରି ନଜରକୁ ଏ ଦୃଶ୍ୟ ଆସିଥିଲା କି ନାଁ କିନ୍ତୁ ଲିନା ଅବିଳମ୍ବେ ଧାଇଁଗଲା ପଡ଼ିଯାଇଥିବା ସେହି ପିଲାଟି ପାଖକୁ । କଷ୍ଟେମଷ୍ଟେ ପିଲାଟିକୁ ଉଠାଇ ଝାଡ଼ିଦେଲା । ମା'ପରି ତାକୁ ବୁଝାଇ ପ୍ରବୋଧନା ବି ଦେଲା, ଯାହା ସେ ଟିକିଏ ଆଗରୁ ତା ମା'ଠାରୁ ଶୁଣିଥିଲା ।

ଭିକାରୀ ପିଲାଟି ସହାୟତା ପାଇଥିବାରୁ ଲୁହ ପୋଛି ଲିନା ହାତ ଧରି ହସିଦେଲା । ଏତିକିବେଳ ଲିନା ପଚାରିଲା, ''ତୁମର ନାଁ କ'ଣ ? ଆଉ ତୁମ ବାପା-ମା' ଓ ଘର.... ?" ପିଲାଟି ଆଖିରେ ଲୁହ ଜକେଇ ଆସିଲା– ମୋ'ନାଁ ରାଜୁ । ଏତିକି ପରିଚୟ ମୋର । ତା' ଛଡ଼ା ଏ ଦୁନିଆରେ ମୋର ଆଉ କେହି ନାହିଁ ।

ଭିକାରୀ ପିଲାଟି ଏତିକି କହି କେଉଁଆଡ଼େ ଚାଲିଗଲା । ଲିନା ତା' ମା' ହାତ ଧରି ମନ୍ଦିରରୁ ଫେରୁଥାଏ ସତ, କିନ୍ତୁ ବାଟଯାକ ତା' କୁନି ଆଖି ଦୁଇଟା ଖୋଜି ହେଉଥିଲା ସେହି ପିଲାଟିକୁ ।

ମା' ଲିନାର ଅନ୍ୟମନସ୍କତାକୁ ଲକ୍ଷ୍ୟ କରି ପଚାରିବାରୁ ଲିନାର ବ୍ୟସ୍ତ ମନ ମା'କୁ ବ୍ୟାକୁଳ ହୋଇ ପଚାରିଲା "ମା' ରାଜୁ କାହିଁକି ଏମତି ମନ୍ଦିର ସାମ୍ନାରେ ଥାଳି ଧରି ମାଗେ, ଆଉ ଏ ଲୋକଗୁଡ଼ା ତାକୁ ପାଦରେ ଆଡ଼େଇଦେଇ ଆସୁଛନ୍ତି କାହିଁକି .... ?"

ମା' ଏଥର ଲିନାକୁ କୋଳେଇନେଲେ ଆଉ କଥା ଭୁଲାଇବାକୁ ଚେଷ୍ଟା କଲେ– କିନ୍ତୁ ଲିନାର ସେହି ପ୍ରଶ୍ନ– ରାଜୁ ଏମିତି କାହିଁକି ମାଗୁଛି କୁହ ମା' । ତା' ମା' କାହିଁ ତାକୁ ପାଖକୁ ନେଉନି.... ? କୁହ ମା' କୁହ..... । ମା' ତାକୁ ଏଥର ବୁଝାଇ କହିଲେ, "ତେବେ ଶୁଣ, ଯାହାର ମା' ନାହିଁ, ତା'ର ସାହା ବି ନାହିଁ, ଏ ଯେମିତି ତୋ ପାଖରେ ଯଦି ମୋ ପରି ମା' ନ ଥାନ୍ତା, ତେବେ ସେ ତ ରାଜୁ ପରି ଅସହାୟ ହୋଇଯାଇଥାନ୍ତା ।

ଆଉ ସେହିପରି ଅସହାୟ ପିଲାମାନଙ୍କୁ କେହି ପଚାରନ୍ତିନି କି ଆଦର ବି କରନ୍ତିନି । ସେ ପୂରା ଏକୁଟିଆ

ହୋଇଯାଏ । ତେଣୁ ରାଜୁ ବି ସେମିତି ଅନାଥ ପିଲାଟିଏ । ତାର ଏଠି କେହି ନାହାନ୍ତି । ତାକୁ କିଏ ଖାଇବାକୁ ଦେବ କହିଲୁ ?

କେବଳ ସେଇଥିପାଇଁ ସେ ଥାଳି ଧରି ଭିକ ମାଗେ । ଯାହା ମିଳେ ତାକୁ ଖାଇ ବଞ୍ଚିଥାଏ । ସେ କଥା ଏଥର ନ ଭାବି ଚାଲ ଆଗେ ଶୀଘ୍ର ଘରକୁ ଯିବା ।"

ଲିନା ମନରେ କିନ୍ତୁ ଏ କଥାଟି ସେମିତି ଗଣ୍ଠିପଡ଼ି ରହି ଯାଇଥାଏ । ତା'ର ଆଉ କେଉଁଠିକି ମନ ଲାଗୁ ନ ଥାଏ । ସନ୍ଧ୍ୟାରେ ସେ ତାର ଜେଜେଙ୍କ ପାଖକୁ ଗଲା । ନିଃଶବ୍ଦ କୋଠରି ଭିତରେ ଜେଜେ ଥିଲେ ସମ୍ପୂର୍ଣ୍ଣ ଏକୁଟିଆ । ନୀରବ ହୋଇ ବସିଥାନ୍ତି । ଝରକାବାଟେ ବୋଧହୁଏ ତାରାମାନଙ୍କୁ ଚାହିଁ ଚାହିଁ ଗଣୁଥାନ୍ତି । ଲିନା ଯାଇ ଜେଜେଙ୍କ ପାଖରେ ବସି ପଡ଼ିଲା । ଆଉ ଗେହ୍ଲେଇ ହୋଇ ସକାଳର ମନ୍ଦିର ଯିବା ଓ ସେଠାକାର ଘଟିଥିବା ଘଟଣା ସବୁ କହିସାରି ସେହି ଏକା ପ୍ରଶ୍ନ ପଚାରିଲା ତା ଜେଜେଙ୍କୁ, ଯାହା ମା'ଙ୍କୁ ପଚାରିଥିଲା । ଆଉ ଉତ୍ତରରେ ଜେଜେ ସେହିପରି ଉତ୍ତରଦେଲେ– ବାପାମା ପରି ଆଉ ବା କିଏ ଏ ଦୁନିଆରେ ନିଜର ହୋଇପାରିବ ? ମନକଥା ମା'ପରି ଆଉ କେହି କ'ଣ ବୁଝିପାରିବ, କହିଲୁ..... ?

ଲିନା ଏଥର ପଚାରିଲା, "ତେବେ କ'ଣ ଜେଜେ ତମର ବି ମା' ନାହିଁ.... ?"

ଚଷମା ଭିତରୁ ଦୁଇବୁନ୍ଦା ତତଲା ଲୁହ ନିଗିଡ଼ି ପଡ଼ିଲା ଜେଜେଙ୍କ ଆଖିରୁ– ଥିଲାରେ ମାମା, ହେଲେ ଏବେ କିନ୍ତୁ ମୋ ମା' ମୋ ପାଖରେ ନାହିଁ.... । କୋହକୁ ଲୁଚାଇବାକୁ ଯାଇ ଜେଜେ କହିଲେ, ''ଯା ପାଠ ପଢ଼ ମା' । ଏବେ ଏ ସବୁ ଭାବ୍‌ନା, ଭଲ ନୁହେଁ । ତୋ ପାଖରେ ତ ତୋ ବାପାମା' ଅଛନ୍ତି । ଯା ମା' ଆଉ କିଛି ଚିନ୍ତା ମୁଣ୍ଡରେ ନ ପୂରାଇ ପାଠ ପଢ଼..... ।"



ଲିନା କିନ୍ତୁ ଜେଜେଙ୍କୁ କହିଲା, "ନାଁ ଜେଜେ ମୁଁ ରାଜୁ ଘଟଣାରୁ ମା'ଠାରୁ ଯାହା ବି ଶୁଣିଲି, ସେତେବେଳୁ ରାଜୁ ନୁହେଁ, ତୁମେ ମୋର ବେଶୀ ମନେପଡ଼ୁଛ ଜେଜେ ।

କାରଣ ତମେ ବି ସେମିତି ନୀରବ ଆଉ ଅସହାୟ ହୋଇ ସବୁବେଳେ ଚୁପ୍ ବସୁଛ । ମୁଁ ଦେଖିଛି ମା'ବି ବେଳେବେଳେ ବିରକ୍ତ ହୁଏ । ବାବା ବି କେବେ କେବେ ତୁମ ଉପରେ ରାଗନ୍ତି । ତୁମ କଥା କିଛି ବି ଶୁଣନ୍ତିନି । ତୁମେ ସେତେବେଳେ ମନ ଦୁଃଖ କର, ହେଲେ କିଛି କୁହନି । କାରଣ ମୁଁ ଜାଣିଛି ଜେଜେ, ତୁମର ମା' ନାହିଁ ବୋଲି ସିନା ତୁମେ ଚୁପ୍ ରୁହ ।" ଜେଜେ ଲିନାକୁ ଧରି ଏଥର ଭୋ ଭୋ ହୋଇ କାନ୍ଦି ଉଠିଲେ । କୋଳକୁ ନେଇ କହିଲେ, "ତୁ ପରା ମୋର ମା', ନ ହେଲେ ଏତେ ଟିକେ କୁନି ମୁଣ୍ଡରେ ଏ ବୁଢ଼ା ଜେଜେଟାର ବ୍ୟଥା, ଅନ୍ତର କଥା ତୁ କେମିତି ବୁଝିପାରନ୍ତୁ ! ଏ ବୁଢ଼ାପୁଅ ଅସହାୟ ନୁହେଁରେ, ତା' ମା' ପରା ଏଇ ଲିନା ମା' ।"

ଲିନା ମୁହଁ ଖୁସିରେ ଝଲକି ଉଠିଲା । ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଯାଇ ପଚାରିଲା, "ତା ହେଲେ ତୁମେ ସତ କହୁଛ ଜେଜେ, ମୁଁ ଏଥର ତୁମ ମା' ? ତୁମ ପାଇଁ ଖାଇବା ତିଆରି କରିପାରିବି । ନିୟମ କର– ଆଉ ଚୁପ୍‌ଚାପ୍ ବସିବନି । ମୋ ସାଥେ ଖେଳିବ ତ, ତେବେ ଯାଇ ମୁଁ ତୁମ ମା' ହୋଇପାରିବି, ନଚେତ୍ ଆଦୌ ନୁହେଁ ।" ବହୁଦିନ ପରେ ଜେଜେ ମନଖୋଲା ହସ ହସୁଥିଲେ, ଯେମିତି ମା'କୋଳରେ କୁନି ଶିଶୁଟିଏ ଖିଲିଖିଲି ହୋଇ ହସିଉଠେ, ସେମିତି ହସୁଥିଲେ ।

ତା'ଆରଦିନ ସକାଳୁ ଲିନା ଜେଜେଙ୍କର କୁନି ମା'ଦାୟିତ୍ୱ ତୁଲାଇବା ପାଇଁ ରୋଷେଇ ଘରକୁ ଗଲା । ମା'ତାର ଆକଟ କରିବାରୁ ଲିନା ମା'କୁ କହିଲା, "ତମେ ମୋ ମା' ହୋଇ ମୋ ପାଇଁ ଯାହଯାହା କର, ମୁଁ ଜେଜେଙ୍କର ଆଜିଠୁ କୁନିମା' ହୋଇ ତାହା ହିଁ କରିବି..... ।"

ତୁମେ କହୁଥିଲ ନା ମା', ରାଜୁର କେହି ନାହାନ୍ତି ବୋଲି ସେ ଅନାଥ, ଅସହାୟ । ତୁମେ ଯଦି ଜେଜେଙ୍କ ମା' ହୋଇ ପାରିଥା'ନ୍ତ, ତେବେ ଜେଜେ କ'ଣ ଅସହାୟ ପରି ଚୁପ୍ ରହି ଘରକୋଣରେ ମନ ଦୁଃଖରେ କାନ୍ଦୁଥା'ନ୍ତେ । ତୁମେ କୁହ ମା' ମତେ କ'ଣ ତୁମେ ରାଜୁ ଭଳି ଆଉ ଜେଜେଙ୍କ ଭଳି କରିପାରିବ ?" ମା-ହାତ ଉଠାଉ ଉଠାଇ ଅଟକିଗଲେ । ଆଜି ଏମିତି କ'ଣ କହୁଛି ଲିନା ! ସତେ ସେ କେବେ ତ ଭାବି ନ ଥିଲେ । ଯାହାକୁ ଅଦରକାରୀ ବୃଦ୍ଧ ବୋଲି ଭାବି ସେ ଯେଉଁ ଅଲୋଡ଼ା, ଅବହେଳା କରୁଥିଲେ, ତାହା ଦିନେ ତାଙ୍କରି ଉପରେ ଏପରି ପ୍ରଭାବ ପକାଇବ ବୋଲି ଅନୁତାପରେ ନୀରବିଗଲେ । ଲିନାର ମଥାକୁ ଆଉଁଶିଦେଇ କହିଲେ, "ଆଉ ଏମିତି ଭୁଲ୍ ହେବନିରେ ମା' ।'' ଲିନା ମା' ଆଖିରୁ ଲୁହ ପୋଛିଦେଇ କହୁଥିଲା, ''ତେଣୁ ତୁମେ ମନଦୁଃଖ କରିବନି । କାରଣ ମୁଁ ଜେଜେଙ୍କୁ ରାଜୁ ପରିକା ହେବାକୁ କେବେବି ଦେଇପାରିବିନି ବୋଲି ତାଙ୍କ ମା' ସାଜିଛି । ଏଥର ତୁମପରି ମୁଁ ତାଙ୍କର ସବୁ କଥା ବୁଝିବି ମା' ।"

ଦୂରରୁ ଜେଜେ ଚାହିଁଥିଲେ ଲିନାକୁ ଆଉ ଅନୁଭବ କରୁଥିଲେ ଲିନା ମା' ଭିତରେ ଜାଗ୍ରତ ହୋଇ ଉଠୁଥିବା ଗୋଟିଏ ମାତୃତ୍ୱର ହୃଦୟକୁ । କେତେ ସହଜରେ ବଦଳାଇ ଦେଉଥିଲା ସେ ବିବର୍ଣ୍ଣ, ବିଶୃଙ୍ଖଳ ପୃଥିବୀକୁ । ତେବେ ଏଠି ଅସଂଖ୍ୟ ବିଦ୍ୱାନୀ ମଣିଷ କାହିଁକି ହରାଇ ଦେଉଛନ୍ତି ସେମାନଙ୍କ ବୁଦ୍ଧି-ବିବେକ ଆଉ ମାନବିକତାକୁ ? ସତରେ ଲିନା ମା' ଏଇ ବୟସରେ ତୁ ଏତେ କଥା ଅନୁଭବ କରିପାରିଲୁ କେମିତି ? ତୋ ପରି ମା' ମୋତେ ସବୁ ଜନ୍ମରେ ମିଳୁ କେବଳ ଏ ସମାଜକୁ ଶିକ୍ଷା ଦେବା ପାଇଁ । ହଁ–ମା, ତୁ ମୋ ମା', କୁନି ଲିନା ମା---- ।

*ଡାବର, ମାଛଗାଁ, ଅଡ଼ଙ୍ଗ, ଜଗତସିଂହପୁର- ୭୫୪୧୧୯*



ରଶ୍ମିତା ଉଦ୍‌ଗାତା, ବି.ଏନ୍. ସଂସ୍କୃତ ମହାବିଦ୍ୟାଳୟ, ଟୁକୁନା, କେନ୍ଦୁଝର



## ପିଲାଏ ଜାଣିବା ପାଇଁ ରୋଗ

# ମ୍ୟାଲେରିଆ

ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ

ସାରା ପୃଥିବୀରେ ଚହଳ ପକାଇଥିବା ରୋଗଟିର ନାଁ ହେଉଛି ମ୍ୟାଲେରିଆ। ଏହା ଏପରି ଏକ ରୋଗ, ଯାହାକୁ ଭୋଗିଲେ ରୋଗୀ ଯେତେ ଚିନ୍ତିତ ହୁଏନାହିଁ– ଏହାକୁ ଭଲ କରିବା ପାଇଁ ଚିକିତ୍ସକମାନେ ଓ ପ୍ରଶାସକମାନେ ଅଧିକ ଚିନ୍ତିତ ହୋଇଥା'ନ୍ତି। କାରଣ ହାରାହାରି ମୃତ୍ୟୁହାର ଅନୁଯାୟୀ ଏହା ଏକ ଅତି ସାଂଘାତିକ ରୋଗ।

ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ହିପୋକ୍ରେଟସ୍ ଏହି ରୋଗକୁ ଚିହ୍ନିଥିଲେ ଓ ଏହା ବିଷୟରେ ଏକ ନିର୍ଦ୍ଦିଷ୍ଟ ବିବରଣୀ ଦେଇଥିଲେ। ଚରକ ଓ ଶୁଶ୍ରୁତ ମଧ୍ୟ ତାଙ୍କ ଶାସ୍ତ୍ରରେ ମଶା କାମୁଡ଼ା ଯୋଗୁଁ ମ୍ୟାଲେରିଆ ହୁଏ ବୋଲି ଉଲ୍ଲେଖ କରିଥିଲେ। ୭ମ ଶତାବ୍ଦୀରେ ପୁରାତନ ଇଟାଲୀର ଲୋକେ ବିଶ୍ୱାସ କରୁଥିଲେ ଯେ ଦୂଷିତ ବାୟୁ ଦ୍ୱାରା ମ୍ୟାଲେରିଆ ରୋଗ ହେଉଥିଲା। ଦୂଷିତ ବାୟୁକୁ ସେମାନେ 'ମାଲେ-ଏରିଆ' ବୋଲି କହୁଥିଲେ, ଯେଉଁଥିରୁ କି ମ୍ୟାଲେରିଆ ଶବ୍ଦଟି ସୃଷ୍ଟି ହୋଇଛି। ୧୮୮୦ ମସିହାରେ ଲୋଭେରାନ୍ ଲାଭେରାନ୍ ନାମକ ଫରାସୀ ସୈନ୍ୟବାହିନୀର ଜଣେ ଚିକିତ୍ସକ ପ୍ରଥମଥର ପାଇଁ ଉତ୍ତର ଆଫ୍ରିକାରେ କେତେ ରୋଗୀଙ୍କଠାରେ ମ୍ୟାଲେରିଆ ପାରାସାଇଟ୍‌ର ସଂଧାନ ପାଇଥିଲେ ଓ ଏହି ରୋଗ ପାରାସାଇଟ୍ ଦ୍ୱାରା ହୁଏ ବୋଲି ପ୍ରକାଶ କରିଥିଲେ। ରୋନାଲଡ୍ ରସ ନାମକ ଜଣେ ବୈଜ୍ଞାନିକ ୧୮୯୮ ମସିହା ବେଳକୁ ଭାରତର ସିକନ୍ଦରାବାଦ୍ ଓ କଲିକତାଠାରେ ବିଭିନ୍ନ ପରୀକ୍ଷାନିରୀକ୍ଷା କରି ମାଈ ଏନୋଫିଲିସ୍ ମଶାର ପାକସ୍ଥଳୀ ଭିତରେ ମ୍ୟାଲେରିଆ ପାରାସାଇଟ୍ ରହିଥିବାର ପ୍ରମାଣ ପାଇଥିଲେ। ପରେ ସେ ପ୍ରକାଶ କରିଥିଲେ ଯେ ମାଈ ଏନୋଫିଲିସ୍ ମଶା ହିଁ ହେଉଛି ମ୍ୟାଲେରିଆ ରୋଗର ବାହକ।

**କାହିଁକି ହୁଏ :** 'ପ୍ଲାଜମୋଡିୟମ୍' ନାମକ ଏକପ୍ରକାର ପାରାସାଇଟ୍ ବା ପରଜୀବୀ ଦ୍ୱାରା ସାଧାରଣତଃ ମ୍ୟାଲେରିଆ ରୋଗ ହୋଇଥାଏ। ପ୍ରାୟ ଚାରି ଜାତିର ପ୍ଲାଜମୋଡିୟମ୍ ଯୋଗୁଁ ଏହି ରୋଗ ହୋଇଥାଏ। କିନ୍ତୁ ଆମ ଭାରତରେ ଓ ଓଡ଼ିଶାରେ ଭାଇଭାକସ୍ ଓ ଫାଲସିଫେରମ୍ ଯୋଗୁଁ ସାଧାରଣତଃ ଲୋକେ ମ୍ୟାଲେରିଆ ରୋଗ ଭୋଗିଥାନ୍ତି। ଶତକଡ଼ା ପ୍ରାୟ ୬୦ ଭାଗ ମ୍ୟାଲେରିଆ ଫାଲସିଫେରମ୍ ଯୋଗୁଁ ହେଉଥିବାବେଳେ ବାକି ୪୦ ଭାଗ ଭାଇଭାକସ୍ ଯୋଗୁଁ ହୋଇଥାଏ। ଫାଲସିଫେରମ ମ୍ୟାଲେରିଆ ସାଧାରଣତଃ ସାଂଘାତିକ ରୂପ ନେଇଥାଏ।

**କିପରି ହୁଏ :** ମାଈ ଏନୋଫିଲିସ୍ ମଶା କାମୁଡ଼ିବା ଦ୍ୱାରା ସାଧାରଣତଃ ମ୍ୟାଲେରିଆ ରୋଗ ହୋଇଥାଏ। ମ୍ୟାଲେରିଆ ରୋଗ ଭୋଗୁଥିବା ଗୋଟିଏ ରୋଗୀକୁ ମାଈ ଏନୋଫିଲିସ୍ ମଶା କାମୁଡ଼ିଲେ ପାରାସାଇଟ୍‌ମାନେ ମଶା ଦେହକୁ ଚାଲିଯାନ୍ତି। ସେମାନେ ସଂକ୍ରମଣକ୍ଷମ ହୋଇଯିବା ପରେ ମଶା ଯେତେବେଳେ ଆଉ ଜଣେ ସୁସ୍ଥ ଲୋକକୁ କାମୁଡ଼େ, ପାରାସାଇଟ୍‌ଗୁଡ଼ିକ ତା ଦେହରେ ପ୍ରବେଶ କରି

ରୋଗ ସୃଷ୍ଟି କରିଥା'ନ୍ତି । ଗୋଟିଏ ମାଇ ଏନୋଫିଲିସ୍ ମଶା ତା'ର ଜୀବନକାଳ ଭିତରେ ହଜାର ହଜାର ଲୋକଙ୍କୁ ମ୍ୟାଲେରିଆ ଦ୍ୱାରା ସଂକ୍ରମିତ କରିପାରିଥାଏ ।

ବେଳେବେଳେ ରକ୍ତ ସଂଚାରଣ ମାଧ୍ୟମରେ ବି ମ୍ୟାଲେରିଆ ରୋଗ ସଂକ୍ରମିତ ହୋଇଥାଏ । ତା' ଛଡ଼ା ଗୋଟିଏ ଇଂଜେକ୍ସନ୍ ଓ ଛୁଞ୍ଚିରେ ଅନେକ ଲୋକ ଏକାବେଳେକେ ଇଂଜେକ୍ସନ୍ ନେଲେ ମ୍ୟାଲେରିଆ ହେବାର ସମ୍ଭାବନା ରହିଥାଏ । ମା'ଠାରୁ ମଧ୍ୟ ଅନେକ ସମୟରେ ନବଜାତ ଶିଶୁକୁ ମ୍ୟାଲେରିଆ ରୋଗ ସଂକ୍ରମିତ ହୋଇଥାଏ । ତେବେ ଏହାର ଦୃଷ୍ଟାନ୍ତ ଖୁବ୍ ବିରଳ ।

**କାହାକୁ ହୁଏ :** ପ୍ରାୟ ସବୁ ବୟସର ଲୋକଙ୍କୁ ମ୍ୟାଲେରିଆ ରୋଗ ହୋଇଥାଏ । ତେବେ ଫାଲସିଫେରମ୍ ମ୍ୟାଲେରିଆ ପିଲାମାନଙ୍କଠାରେ ସାଧାରଣତଃ କମ୍ ଦେଖାଯାଏ । ପୁରୁଷମାନେ ମହିଳାମାନଙ୍କଠାରୁ ଅଧିକ ସଂଖ୍ୟାରେ ମ୍ୟାଲେରିଆ ରୋଗରେ ପଡ଼ିଥାନ୍ତି । ଅବହେଳିତ ଲୋକ ଓ ଦରିଦ୍ର ଲୋକମାନଙ୍କଠାରେ ଏହି ରୋଗ ବେଶି ଦେଖାଯାଏ । ଖଣି ଅଞ୍ଚଳରେ ଓ ସନ୍ତସନ୍ତିଆ, କାଦୁଆ ଅଞ୍ଚଳରେ ରହୁଥିବା ଲୋକଙ୍କୁ ଏହା ବେଶି ହୋଇଥାଏ । ମଶାରି ନ ଟାଙ୍ଗି ଓ ଘର ବାହାରେ ଶୋଉଥିବା ଲୋକଙ୍କୁ ମଧ୍ୟ ଏହା ଅଧିକ ହୋଇଥାଏ ।

**କ'ଣ ହୁଏ :** ଜ୍ୱର ହିଁ ମ୍ୟାଲେରିଆ ରୋଗର ମୁଖ୍ୟ ଲକ୍ଷଣ । ମ୍ୟାଲେରିଆ ଜ୍ୱର ସାଧାରଣତଃ ତିନିଟି ସୋପାନ ଦେଇ ଗତି କରିଥାଏ । ସେଗୁଡ଼ିକ ହେଲା– ଶୀତଳ ଅବସ୍ଥା ବା ଶୀତ କମ୍ପ ଅବସ୍ଥା, ଉଷ୍ଣ ଅବସ୍ଥା ବା ଜ୍ୱର ଅବସ୍ଥା, ସ୍ୱେଦ ଅବସ୍ଥା ବା ଆର୍ଦ୍ର ଅବସ୍ଥା ।

ଶୀତଳ ଅବସ୍ଥାରେ ରୋଗୀକୁ ଖୁବ୍ ଥଣ୍ଡା ଲାଗେ, ଶୀତ ହୁଏ ଓ ଜୋର୍‌ରେ କମ୍ପ ହୁଏ । ଦେହହାତ ଥରେ ଓ ସେ ଘୋଡ଼ି ହୋଇ ଶୋଇବାକୁ ଇଚ୍ଛା କରେ । ଆଙ୍ଗୁଠି ଟିପ ଓ ଓଠ ନେଳିଆ ଦିଶେ । ଚର୍ମ ଶୁଖିଲା ଲାଗେ । ଲୋମ ସବୁ ଠିଆ ହୋଇଯାଏ । ଏପରି ଅବସ୍ଥା ୧୫ ମିନିଟ୍‌ରୁ ଏକ ଘଣ୍ଟା ପର୍ଯ୍ୟନ୍ତ ଲାଗି ରହେ । ତା'ପରେ ଉଷ୍ଣ ଅବସ୍ଥା ଆରମ୍ଭ ହୁଏ । ଏଥିରେ ରୋଗୀର ଜ୍ୱର ଖୁବ୍ ବଢ଼ିଯାଏ । ଦେହର ତାପମାତ୍ରା ବେଳେବେଳେ ୧୦୬ ଡିଗ୍ରୀ ଫାରେନହିଟ୍ ପର୍ଯ୍ୟନ୍ତ ହୋଇଯାଏ । ରୋଗୀ ଦେହ ଜଳିପୋଡ଼ି ଯିବା ପରି ଅନୁଭବ କରେ । କଣ୍ଠାକମ୍ବଳ ଫୋପାଡ଼ିଦିଏ । ଭୀଷଣ ମୁଣ୍ଡବ୍ୟଥା ହୁଏ । ଅତ୍ୟଧିକ ଶୋଷ ହୁଏ । ଅରୁଚି ଲାଗେ ଓ ବାନ୍ତି ହୁଏ ।

ଏହି ଅବସ୍ଥା ଦୁଇଘଣ୍ଟାରୁ ଛଅ ଘଣ୍ଟା ପର୍ଯ୍ୟନ୍ତ ଲାଗି ରହେ । ତା'ପରେ ସ୍ୱେଦ ଅବସ୍ଥା ଆରମ୍ଭ ହୁଏ । ଦେହରୁ ପ୍ରଚୁର ଝାଳ ବହି ଜ୍ୱର ଓହ୍ଲାଇଯାଏ । ରୋଗୀକୁ ଗାଢ଼ ନିଦ ହୋଇଯାଏ । ନିଦ ଭାଂଗିବା ପରେ ଦୁର୍ବଳ ଲାଗେ । ଏହି ଅବସ୍ଥା ଦୁଇରୁ ଚାରି ଘଣ୍ଟା ପର୍ଯ୍ୟନ୍ତ ରହେ ।

ମ୍ୟାଲେରିଆ ଜ୍ୱର ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ଆସିଥାଏ । ପାରାସାଇଟ୍ ଜାତି ଅନୁଯାୟୀ ଏହା ପ୍ରତିଦିନ ଦିନେ ଛଡ଼ା ଦିନେ, ଦୁଇ ଦିନ ଅନ୍ତରରେ, ଚାରିଦିନ ଅନ୍ତରରେ, ଏପରିକି ୧୫ ଦିନ କିମ୍ବା ମାସେ ଅନ୍ତରରେ ମଧ୍ୟ ଆସିପାରେ । ଏହିପରି ପାଳି କରି ଆସୁଥିବାରୁ ମ୍ୟାଲେରିଆକୁ ପାଳିଜ୍ୱର ମଧ୍ୟ କୁହାଯାଏ ।

**ଭାଇଭାକସ୍ ମ୍ୟାଲେରିଆ:** ଏହାକୁ ସାଧାରଣତଃ ମ୍ୟାଲେରିଆ ବୋଲି କୁହାଯାଏ । ପ୍ରଥମେ ମୁଣ୍ଡବ୍ୟଥା, ଅଣ୍ଟାବ୍ୟଥା, ଗୋଡ଼ ହାତରେ ଯନ୍ତ୍ରଣା ଓ କ୍ଷୁଧାହୀନତା ଆକାରରେ ଏହା ଆରମ୍ଭ ହୁଏ । ତା'ପରେ ଜ୍ୱର ଆରମ୍ଭ ହୋଇ ହଠାତ୍ ବଢ଼ିଯାଏ । ପ୍ରବଳ କମ୍ପ ହୁଏ ଓ ଦେହହାତ

ବରଡ଼ାପତ୍ର ପରି ଥରେ । ଜ୍ୱର ଉପରବର୍ଣ୍ଣିତ ତିନି ସୋପାନ ବିଶିଷ୍ଟ ହୋଇଥାଏ । ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ କିମ୍ବା ଦିନେ ଛଡ଼ା ଦିନେ ଜ୍ୱର ଆସେ । ଜ୍ୱର ସାଧାରଣତଃ ଅପରାହ୍ଣରେ ଆସିଥାଏ । ରୋଗୀ ବହୁତ ଦୁର୍ବଳ ହୋଇଯାଏ । ଓଠ କୋଣରେ ଘା' ହୁଏ । ରୋଗୀ ଦେହରୁ ରକ୍ତ କମିଯାଏ । ପ୍ଲୀହା, ଯକୃତ ଆଦି ବଢ଼ିଯାଏ । ଏହାଦ୍ୱାରା ପେଟ ଓହଳିବା ପରି ଦେଖାଯାଏ । ଜ୍ୱର ବାରମ୍ବାର ଲେଉଟୁଥାଏ । ଉପଯୁକ୍ତ ଚିକିତ୍ସା ଦ୍ୱାରା ଏହା ସମ୍ପୂର୍ଣ୍ଣ ଭଲ ହୋଇଯାଏ ।

**ଫାଲସିଫେରମ ମ୍ୟାଲେରିଆ :** ଏହାକୁ ସେରିବ୍ରାଲ୍ ମ୍ୟାଲେରିଆ ବା ବ୍ରେନ୍ ଫିଭର୍ ବା ମସ୍ତିଷ୍କ ଜ୍ୱର ବୋଲି କୁହାଯାଏ । ଏହା ଖୁବ୍ ମାରାତ୍ମକ । ଜ୍ୱର ଓ ଉପରଲିଖିତ ଅନ୍ୟାନ୍ୟ ଲକ୍ଷଣ ସହିତ ଏଥିରେ ରୋଗୀ କୋମା ବା ଅଚେତ ଅବସ୍ଥାକୁ ଚାଲିଯାଏ । ରୋଗୀ କଥା କହି ପାରେନାହିଁ । ରୋଗୀକୁ ସହଜରେ ଉଠାଇ ହୁଏନାହିଁ । ରୋଗୀକୁ ଖୁବ୍ ଜୋର୍‌ରେ ବାତ ମାରେ ଓ ଆପେ ଆପେ ଝାଡ଼ାପରିସ୍ରା ହୋଇଯାଏ । ଆଖିର ପୁଅଡୋଳା ସଂକୁଚିତ ହୋଇଯାଏ । ବୃକ୍କ ଅକାମି ହୋଇଯାଏ । ଶୀଘ୍ର ଠିକ୍ ଭାବରେ ଚିକିତ୍ସା ନ କଲେ ରୋଗୀର ବଞ୍ଚି ରହିବା ସମ୍ଭବ ହୁଏନାହିଁ ।

**କେମିତି ଜଣାପଡ଼େ :** ରୋଗର ନିର୍ଦ୍ଦିଷ୍ଟ ଲକ୍ଷଣ ଓ ଚିହ୍ନରୁ ମ୍ୟାଲେରିଆକୁ ଚିହ୍ନିବାରେ କିଛି କଷ୍ଟ ହୁଏନାହିଁ । ତେବେ ଆଙ୍ଗୁଠି ଓ ଟିପରୁ ରକ୍ତ ନେଇ ପରୀକ୍ଷା କଲେ ସେଥିରେ ମ୍ୟାଲେରିଆ ପାରାସାଇଟ୍‌ର ସନ୍ଧାନ ମିଳିଥାଏ । ରକ୍ତରେ ଯେଉଁ ଜାତିର ପାରାସାଇଟ୍ ରହିଥାଏ, ରୋଗୀକୁ ସେହି ପ୍ରକାର ମ୍ୟାଲେରିଆ ହୋଇଛି ବୋଲି ଜଣାପଡ଼ିଥାଏ ।

ମ୍ୟାଲେରିଆର ଚିକିତ୍ସାକୁ ତିନିଟି ପର୍ଯ୍ୟାୟଭୁକ୍ତ କରାଯାଇଥାଏ । ତାହା ହେଲା ନିର୍ଦ୍ଦିଷ୍ଟ ଔଷଧ ଚିକିତ୍ସା, ସମ୍ବଳ ଚିକିତ୍ସା ଓ ଆନୁଷଙ୍ଗିକ ଚିକିତ୍ସା ।

**ନିର୍ଦ୍ଦିଷ୍ଟ ଔଷଧ ଚିକିତ୍ସା :** ମ୍ୟାଲେରିଆକୁ ଭଲ କରିବା ପାଇଁ କେତେକ ନିର୍ଦ୍ଦିଷ୍ଟ ଔଷଧ ମିଳିଥାଏ । ସରକାରୀ ସ୍ତରରେ ଏହା ମାଗଣାରେ ମିଳିଥାଏ । ସେହି ଔଷଧଗୁଡ଼ିକ ମଧ୍ୟରେ କ୍ଲୋରୋକୁଇନ୍, କୁଇନିନ୍, ସଲଫା ଡକ୍‌ସିନ୍, ପାଇରିମେଥାମିନ୍, ଆର୍ଟିସୁନେଟ୍, ଆର୍ଟିଇଥର, ଆର୍ଟିମିଥର, ମେଫୋଲୋକୁଇନ୍ ଇତ୍ୟାଦି ପ୍ରଧାନ । ତେଣୁ ମ୍ୟାଲେରିଆ ରୋଗର ଆଶଂକା ହେଲେ ଡାକ୍ତରଙ୍କୁ ପଚାରି ରୋଗୀକୁ ନିର୍ଦ୍ଦିଷ୍ଟ ମାତ୍ରାର ଔଷଧ ଖାଇବାକୁ ଦେବା ଆବଶ୍ୟକ ।

**ଆନୁଷଂଗିକ ଚିକିତ୍ସା :**

- ରୋଗୀକୁ ସମ୍ପୂର୍ଣ୍ଣ ବିଶ୍ରାମ ଦିଅ ।
- ଜ୍ୱର କମାଇବା ପାଇଁ ମୁଣ୍ଡରେ ପାଣିପଟି ପକାଅ କିମ୍ବା ଦେହକୁ ଓଦା କନାରେ ପୋଛିଦିଅ । ଉପଯୁକ୍ତ ମାତ୍ରାର ପାରାସିଟାମଲ ବଟିକା ମଧ୍ୟ ଦେଇପାର ।
- ଅଇ, ବାନ୍ତି ଆଦି ହେଉଥିଲେ ଉପଯୁକ୍ତ ଔଷଧ ଦିଅ ।
- ରକ୍ତହୀନତା ଥିଲେ ଲୌହ ବଟିକା ସହ ଭିଟାମିନ୍ ବଟିକା ଦିଅ । ଅତ୍ୟଧିକ ରକ୍ତହୀନତା ଥିଲେ ରକ୍ତ ସଂଚାରଣର ବ୍ୟବସ୍ଥା କର ।
- ରୋଗୀକୁ ପ୍ରଚୁର ପାଣି ପିଇବାକୁ ଦିଅ ।
- ରୋଗୀ ବାଉଳିଚାଉଳି ହେଲେ, ବାତ ମାରିଲେ, କିମ୍ବା ଚେତା ହରାଇଲେ ତୁରନ୍ତ ଡାକ୍ତରଖାନାକୁ ନେଇଯାଅ ।

**ପ୍ରତିଷେଧକ ବ୍ୟବସ୍ଥା :** ମ୍ୟାଲେରିଆ ରୋଗ ବିରୋଧରେ ଏ ଯାବତ୍ କୌଣସି ପ୍ରତିଷେଧକ ଟିକା ବାହାରିନାହିଁ, କିନ୍ତୁ କେତେକ ପ୍ରତିଷେଧକ ବ୍ୟବସ୍ଥା ଅନୁସରଣ କଲେ ଏହି ରୋଗରୁ ମୁକ୍ତି ମିଳିଥାଏ ।

◆ ଯେ କୌଣସି କାରଣରୁ ହେଉ ନା କାହିଁକି ଜ୍ୱର ହେବା ମାତ୍ରେ ତାକୁ ମ୍ୟାଲେରିଆ ବୋଲି ଭାବି ରକ୍ତ ପରୀକ୍ଷା କର ଓ ଉପଯୁକ୍ତ ମାତ୍ରାର କ୍ଲୋରୋକୁଇନ୍ ବଟିକା ଖାଇବାକୁ ଦିଅ

◆ ରକ୍ତ ପରୀକ୍ଷାରୁ ପାରାସାଇଟ୍ ରହିଥିବାର ସଂଧାନ ମିଳିଲେ ସମୂଳ ଚିକିତ୍ସାର ବ୍ୟବସ୍ଥା କର ।

◆ ମ୍ୟାଲେରିଆ ନ ବ୍ୟାପିବା ପାଇଁ ମଶା ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଦିଅ ।

◆ ଘର ପାଖରେ ଖାଲ, ଖମା, ଅରମା ଆଦି ରଖନାହିଁ ।

◆ ନାଳନର୍ଦ୍ଦମାକୁ ସବୁବେଳେ ପରିଷ୍କାର ରଖ ।

◆ ମଶାମାନଙ୍କୁ ମାରିବା ପାଇଁ ଡି.ଡି.ଟି, ମଶାତେଲ କିମ୍ବା ମଶାଧୂଆଁ ପକାଇବାର ବ୍ୟବସ୍ଥା କର ।

◆ ମଶା ଜନ୍ମ ସ୍ଥାନରେ ଗାମ୍ବୁସିଆ ମାଛ ଛାଡ଼ ।

◆ ଘର ଭିତରେ କୌଣସି ପାତ୍ରରେ ଦୀର୍ଘଦିନ ପର୍ଯ୍ୟନ୍ତ ପାଣି ଆବଦ୍ଧ କରି ରଖନାହିଁ ।

◆ ଶୋଇବାବେଳେ ସାଧାରଣ ମଶାରି କିମ୍ବା କୀଟନାଶକ ଔଷଧ ଉପଚାରିତ ମଶାରି ବ୍ୟବହାର କର ।

◆ ମଶାରି ନ ଥିଲେ ମଶାବତି, ମ୍ୟାଟ୍ କିମ୍ବା ଲିକୁଇଡ୍ ବ୍ୟବହାର କର ।

◆ ଘର ଭିତରେ ନିମପତ୍ର କିମ୍ବା ଝୁଣାର ଧୂଆଁ ଦିଅ ।

◆ ଦେହରେ ନିମ ତେଲ କିମ୍ବା ବଜାରରେ ମିଳୁଥିବା ମଶା ବିନାଶକ ତେଲ ବା ମଲମ ଲଗାଅ ।

◆ ଦେହକୁ ସଂପୂର୍ଣ୍ଣ ଆବୃତ କରିବା ଭଳି ପୋଷାକ ପିନ୍ଧ ।

ମ୍ୟାଲେରିଆ ଏକ ଜାତୀୟ ସମସ୍ୟା । ଦେଶରୁ ଏହାକୁ ସଂପୂର୍ଣ୍ଣ ନିରାକରଣ ପାଇଁ ସରକାର ବେଶ୍ ତତ୍ପର । ଏଥିପାଇଁ ବିଭିନ୍ନ ପ୍ରକାର ଯୋଜନା କାର୍ଯ୍ୟକାରୀ ହେଉଛି । ସମସ୍ତଙ୍କ ସହଯୋଗ ଓ ସଚେତନତା ହିଁ ଏହାକୁ ସଫଳ କରିପାରିବ ।

*'ନିମନ୍ତ୍ରଣ', ୮୯, ଶକ୍ତିନଗର, ଲିଙ୍କ୍‌ରୋଡ଼, କଟକ-୧୨*

⁂

## ଅଛି–ନାହିଁ

ତଳେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ !

*(ଉତ୍ତର ୫୦ ପୃଷ୍ଠାରେ)*





# ମାଆ ଆଗମନୀ

ମତୀ ପ୍ରମୋଦା ଦାସ

ବଜାରେ ବଜା ବାଇଦ ବଜା
ଚଉଦିଗ ଆଜି ସଜାରେ ସଜା ।
ମାଆ ଆସୁଛନ୍ତି କରିବା ମଜା
ଶରତ ସକାଳ ହୋଇଛି ତାଜା ।
ଆକାଶରେ ମେଘ ନାହିଁରେ ନାହିଁ
ଶୀତଳ ପବନ ଆସଇ ବହି ।
ମାଟି ପରେ ଦେଖ ଘାସ ଗାଲିଚା
ମାଆ ପାଇଁ ସତେ ହୋଇଛି ବିଛା ।
ନାନା ଜାତି ଫୁଲ ହସି ଫୁଟୁଛି
କାଶତଣ୍ଡୀ ଦୂରେ ମଥା ପିଟୁଛି ।
ମଣ୍ଡପ ତୋରଣ ଦେବା ସଜେଇ
ନାନା ଜାତି ଭୋଗ ରଖିବା ନେଇ ।
ନବ ବସନରେ ମନ ହରଷ
ସବୁରି ମୁହଁରେ ସୁଖ ସରସ ।
ବରଷେ ଧରାକୁ ଥରେ ଆସିବେ
ଦୁଃଖଶୋକ ସବୁ ମା' ନାଶିବେ ।
ଦଶ ହାତେ ଦଶ ଆୟୁଧ ଧରି
ଅନୀତି ଦୁର୍ନୀତି ଦେବେ ସଂହାରି ।
ମାଆଙ୍କ ଆଶିଷ ପଡ଼ିବ ଝରି
ଦୁର୍ଗତିନାଶିନୀ ମାଆ ସବୁରି ।

*ମାର୍ଫତ୍- ଇଂ. ଆର୍.ପି. ଦାସ, ଦେଉଳସାହି, କଟକ- ୮*

# ବୁଦ୍ଧିମତୀ ମହାରାଣୀ

ଶ୍ରୀ ଶିବ ମିଶ୍ର

ବିକ୍ରମପୁର ରାଜ୍ୟରେ ମୁଖ୍ୟ ସେନାପତିଙ୍କର ଅକାଳ ମୃତ୍ୟୁ ହେଲା । ସେହି ରାଜ୍ୟରେ ତିନିଜଣ ଉପମୁଖ୍ୟ ସେନାପତି ଥିଲେ । ସେ ତିନିହେଁ ଏକକୁ ଆରେକ ବଳି ଥିବାରୁ ସେମାନଙ୍କ ମଧ୍ୟରୁ କାହାକୁ ମୁଖ୍ୟ ସେନାପତି ପଦ ଦିଆଯିବ ବୋଲି ରାଜା ସ୍ଥିର କରି ନ ପାରି ଚିନ୍ତାରେ ପଡ଼ିଗଲେ । ଏହି ସମସ୍ୟାର ସମାଧାନ ପାଇଁ ମନ୍ତ୍ରୀମାନଙ୍କର ପରାମର୍ଶ ଲୋଡ଼ିଲେ ।

ଜଣେ ମନ୍ତ୍ରୀ କହିଲେ— ସେହି ତିନିଜଣଙ୍କ ଭିତରୁ ଯିଏ ସୈନ୍ୟ-ବାହିନୀକୁ ସଂଗଠିତ କରି ସୁପରିଚାଳନା କରିପାରିବେ, ତାଙ୍କୁ ଏହି ମୁଖ୍ୟ ପଦ ଦିଆଯାଉ । ଶେଷରେ ପ୍ରଧାନମନ୍ତ୍ରୀ କହିଲେ, ''ଯିଏ ବିପଦ କାଳରେ ଉପଯୁକ୍ତ କୌଶଳ ପ୍ରୟୋଗ କରିପାରିବେ ସିଏ ସେନାଧ୍ୟକ୍ଷ ହେଲେ ରାଜ୍ୟ ନିରାପଦ ରହିବ ।''

ମନ୍ତ୍ରୀମାନଙ୍କ ବିଚାର ଶୁଣିବା ପରେ ମହାରାଜାଙ୍କର ଚିନ୍ତା ବଢ଼ିଗଲା । ସିଏ କିଛି ସ୍ଥିର କରି ନ ପାରି ଅନ୍ତଃପୁରକୁ ଚାଲିଗଲେ । ଚିନ୍ତାରେ ବୁଡ଼ିରହିଥିବା ମହାରାଜାଙ୍କୁ ଦେଖି ମହାରାଣୀ ପଚାରିଲେ, ''ଘଟଣା କ'ଣ ? ଏତେ ଚିନ୍ତା କାହିଁକି ?''

ମହାରାଜା କହିଲେ— ଆମ ମୁଖ୍ୟ ସେନାପତିଙ୍କର ମୃତ୍ୟୁ ପରେ ରାଜ୍ୟରେ ଥିବା ତିନିଜଣ ଉପମୁଖ୍ୟ ସେନାପତିଙ୍କ ମଧ୍ୟରୁ କିଏ ଏହି ପଦ ପାଇଁ ଯୋଗ୍ୟ, ତାହା କିପରି ଜଣାପଡ଼ିବ ? ଏହି ଚିନ୍ତା ମୋତେ ବ୍ୟସ୍ତ କରିଦେଉଛି ।

ମହାରାଣୀ କହିଲେ, ''ଏହି ସାମାନ୍ୟ ସମସ୍ୟା ପାଇଁ ଏତେ ବ୍ୟସ୍ତ କାହିଁକି ? ଆସନ୍ତାକାଲି ସେହି ତିନିଜଣ ଉପମୁଖ୍ୟ ସେନାପତିଙ୍କର ଯୋଗ୍ୟତା ପରୀକ୍ଷା କରାଯାଉ ।'' ମହାରାଜା କହିଲେ– ଏହି ପରୀକ୍ଷା କିପରି କରାଯାଇ ପାରିବ ?

ସେଥିପାଇଁ ସେ ତିନିଜଣଙ୍କୁ ଗୋଟିଏ ମାତ୍ର ପ୍ରଶ୍ନ ପଚରାଯିବ । ସେମାନଙ୍କ ଉତ୍ତରରୁ ତାଙ୍କ ଦକ୍ଷତା, ଯୋଗ୍ୟତା ଜଣାପଡ଼ିବ ବୋଲି ମହାରାଣୀ କହିଲେ ।

ମହାରାଣୀଙ୍କର ଏହି ପ୍ରସ୍ତାବରେ ମହାରାଜା ସମ୍ମତ ହେଲେ । ପରଦିନ ଦରବାର କାର୍ଯ୍ୟ ଆରମ୍ଭ ହେବା ପରେ ମହାରାଜାଙ୍କର ନିର୍ଦ୍ଦେଶରେ ତିନି ଉପମୁଖ୍ୟ ସେନାପତିଙ୍କୁ ତିନିଖଣ୍ଡ କାଗଜ ଦିଆଗଲା । ମହାରାଜା କହିଲେ, ''ଆପଣମାନଙ୍କୁ ଆମ ଏଇ ରାଜ୍ୟ କିପରି ଦେଖାଯାଉଛି, ତାହା ମାତ୍ର ଗୋଟିଏ ବାକ୍ୟରେ ଲେଖନ୍ତୁ ।''

ଉପମୁଖ୍ୟ ସେନାପତିମାନେ ରାଜାଙ୍କ ଆଜ୍ଞାନୁଯାୟୀ କାଗଜରେ ଲେଖିଲେ । ଏହାପରେ ସେହି କାଗଜ ତିନିଖଣ୍ଡକୁ ପ୍ରଧାନମନ୍ତ୍ରୀ ଆଣି ଦେଖିଲେ ସେଥିରୁ ଗୋଟିଏ କାଗଜରେ ଲେଖାଥିଲା, "ଆମ ରାଜ୍ୟ କଳ୍ପନାର ଅମରାବତୀ ପରି ଦେଖାଯାଉଛି ।'' ଆଉଜଣେ ଲେଖିଥିଲେ, "ଆମ ରାଜ୍ୟ ତାରାମାନଙ୍କ ଭିତରେ ପୂର୍ଣ୍ଣ ଚନ୍ଦ୍ର ପରି ଶୋଭାପାଉଛି ।'' ତୃତୀୟ କାଗଜଖଣ୍ଡକରେ ଲେଖା ହୋଇଥିଲା, "ମୋ ଆଖିକୁ ମୋ ମାଆ ଏବଂ ମୋ ରାଜ୍ୟ ଏକାପରି ଦିଶୁଛନ୍ତି ।''

ମହାମନ୍ତ୍ରୀ ପ୍ରଥମ କାଗଜ ଦୁଇଖଣ୍ଡ ରଖିଦେଇ ତୃତୀୟଟି ମହାରାଜାଙ୍କୁ ବଢ଼ାଇଦେଇ କହିଲେ– ଜନ୍ମଦାତ୍ରୀ ଏବଂ ଜନ୍ମଭୂମିକୁ ଏକ ଓ ଅଭିନ୍ନ ବୋଲି ଭାବୁଥିବା ବ୍ୟକ୍ତି ହିଁ ରାଜ୍ୟର ମୁଖ୍ୟ ସେନାପତି ଦାୟିତ୍ୱ ତୁଲାଇ ପାରିବେ ।

ଏତେ ଗୁରୁତର ସମସ୍ୟା ଏମିତି ସହଜ ଓ ସରଳ ଭାବରେ ସମାଧାନ ହୋଇଯାଇଥିବାରୁ ପ୍ରଧାନମନ୍ତ୍ରୀ ଏବଂ ଦରବାରରେ ଉପସ୍ଥିତ ଥିବା ସମସ୍ତ ପାରିଷଦ ମହାରାଜାଙ୍କୁ ପ୍ରଶଂସା କରିବାପାଇଁ ଆରମ୍ଭ କରିବାରୁ ମହାରାଜା ସେଥିରେ ବାଧା ଦେଇ କହିଲେ, ''ଏହି କାର୍ଯ୍ୟ ତାଙ୍କ ବୁଦ୍ଧି ଯୋଗୁଁ ନୁହେଁ, ମହାରାଣୀଙ୍କ ବୁଦ୍ଧି ଯୋଗୁଁ ସମ୍ଭବ ହୋଇପାରିଛି । ତେଣୁ ମହାରାଣୀ ହିଁ ସମସ୍ତ ପ୍ରଶଂସାର ଅଧିକାରିଣୀ ।'' ଏବେ ବୁଦ୍ଧିମତୀ ମହାରାଣୀଙ୍କ ଜୟ ଜୟକାରରେ ଦରବାର କମ୍ପିଲା ।

*ବାଣପୁର, ଖୋର୍ଦ୍ଧା*

# ସୁନି ଓ ମୟୂର ପକ୍ଷୀ

ଡକ୍ଟର ରାଧାମାଧବ ରଥ

ସୁନି ଏକ ଆଦିବାସୀ ଝିଅ । ସେ ତାର ବାପମା'ଙ୍କ ପାଖରେ ଖୁସିରେ ରହିଥାଏ । ଉଭୟେ ସୁନିକୁ ଖୁବ୍ ଆଦର କରନ୍ତି । କାରଣ ସେ ଏକମାତ୍ର ସନ୍ତାନ । ଘରର ସମସ୍ତ କାମ ସାରି ବାପମା'ଙ୍କର ମନ କିଣିଥାଏ ସେ; ହେଲେ ପାଠ ପଢ଼ିବାକୁ ଫୁରସତ୍ ପାଏନାହିଁ । ନିଜ ଗାଁ'ରେ ମଧ୍ୟ ପଢ଼ିବାର କିଛି ସୁବିଧା ନାହିଁ । ତେଣୁ ଜଙ୍ଗଲ ଦେଇ ଦୂର ଗାଁରେ ଏକ ସ୍କୁଲ୍‌କୁ ଚାଲି ଚାଲି ପଢ଼ିବାକୁ ଯାଏ । ତାକୁ ପଢ଼ାଇବାକୁ ବାପମା'ଙ୍କର ଆଦୌ ଇଚ୍ଛା ନ ଥାଏ । ଆଦିବାସୀ ଝିଅ ତ ! ଭବିଷ୍ୟତରେ ଝିଅକୁ ବାହା ଦେଲେ ତାଙ୍କର ଦାୟିତ୍ୱ ତୁଟିଯିବ । ସୁନିର ପଢ଼ିବା ପ୍ରତି ଭାରି ଆଗ୍ରହ । ଦିନଟେ ସ୍କୁଲ୍ ନ ଆସିଲେ ଶିକ୍ଷକମାନେ ତାକୁ ପଚାରି ବସନ୍ତି ।

ମୂଳ କାରଣ ରାସ୍ତାଘାଟର ସୁବିଧା ନାହିଁ । ଜଂଗଲ ଦେଇ ସାଥୀଙ୍କ ମେଳରେ ଗଲାବେଳେ ଛୋଟବଡ଼ ଜୀବଜନ୍ତୁଙ୍କ ପ୍ରତି ତା'ର ନଜର ପଡ଼େ । ବେଳେବେଳେ ଏକଲା ଗଲାବେଳେ ବିପଦର ସମ୍ମୁଖୀନ ହେଲେ ଯେ କୌଣସିମତେ ବୁଦ୍ଧି ପ୍ରୟୋଗ କରି ସେଠାରୁ ଖସି ଚାଲିଆସେ । ଏ ଯାଏଁ ବାଘଭାଲୁଙ୍କ ହାବୁଡ଼ରେ ପଡ଼ିନାହିଁ ସେ । ସୁନିର ଜଙ୍ଗଲର ପକ୍ଷୀମାନଙ୍କ ପ୍ରତି ଦୟା ଯେତିକି, ଆକର୍ଷଣ ବି ତହୁଁ ଅଧିକ । ଇଚ୍ଛା ହୁଏ କୌଣସି ପକ୍ଷୀକୁ ଧରି ଆଣି ଘରେ ପଞ୍ଜୁରି ଭିତରେ ରଖନ୍ତା କି ! ତା ସହିତ ସମୟ ବିତାନ୍ତା କି ! ତାକୁ ଖାଇବାକୁ ଦିଅନ୍ତା । ତା ଭଲମନ୍ଦ ବୁଝନ୍ତା; କିନ୍ତୁ ଘର କାମରେ ବ୍ୟସ୍ତ ରହି ତା' ସମସ୍ତ ଆଗ୍ରହ ଫିକା ପଡ଼ି ଆସେ । ନିଜ ଇଚ୍ଛା, ଇଚ୍ଛାରେ ହିଁ ରହିଯାଏ ।



ଦିନେ ବଡ଼ିଭୋର୍‌ରୁ ତା' ନିଦ ଭାଂଗିଗଲା । କାଉର କା' କା' ଡାକରେ ସେ ଚଳଚଞ୍ଚଳ ହୋଇ ଉଠିଲା । ଆଉ ଶୋଇ ନ ରହି ଘର ଭିତରେ ଥିବା ଅଗଣାକୁ ଗଲା ଲିପାପୋଛା ଓ ଝାଡୁ ମରିବା ପାଇଁ । ଘରର ଅଧିକାଂଶ କାମ ତାକୁ କରିବାକୁ ପଡ଼େ । ମାଆ କେଉଁକାଳୁ ବେମାରି । ହଠାତ୍ ସେ ଉପରକୁ ଚାହିଁ ଯାହା ଦେଖିଲା, ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ମୟୂର ଛୁଆଟାଏ କାହୁଁ ଆସି ଚାଳଘରର ମଥାନ ଉପରେ ବସି ଏଣେତେଣେ ଚାହୁଁଛି । ବୋଧହୁଏ ପାଖ ଜଂଗଲରୁ ଉଡ଼ି ଆସିଛି ତା' ମାଆକୁ ଖୋଜିବା ଲାଗି । ଖୁବ୍ ସୁନ୍ଦର ଦିଶୁଥାଏ ଦୂରରୁ । ସୁନିର ଇଚ୍ଛା ହେଉଥାଏ ତାକୁ ଧରିଆଣି ନିଜ ପାଖରେ ରଖିବା ପାଇଁ । ସେତେବେଳେ ଆକାଶ ଫର୍ଚ୍ଚା ହୋଇ ଆସିଲାଣି । ଟିକିଏ ଟିକିଏ ଥଣ୍ଡା ପବନ

ବୋହୁଥାଏ । ଲୋକମାନେ ନିଜ ନିଜ କାମରେ ଲାଗି ପଡ଼ିଲେଣି । ସୁନିର ବାପା କେତେବେଳୁ ଆସି ତା ପାଖରେ ଠିଆ ହେଲେଣି, ତାକୁ ଜଣାନାହିଁ । ବାପା ସୁନିକୁ ପଚାରିଲେ, "ତୁ କାହାକୁ ଏକଲୟରେ ଚାହିଁ ରହିଛୁ ଶୁଣେ ?" ଉତ୍ତରରେ ସୁନି କହିଲା, "ବାପା ! ଆମ ଚାଳ ଉପରକୁ ଟିକେ ଚାହିଁଲ, କିପରି ମୟୂରଛୁଆଟା ଆମ ଆଡ଼କୁ ଚାହିଁ ରହିଛି !" ସେତେବେଳ ଯାଏଁ ତା ବାପା ମୟୂର ଛୁଆଟିକୁ ସ୍ୱଚକ୍ଷୁରେ ଦେଖି ପାରି ନ ଥିଲେ । ସୁନି କୌତୂହଳବଶତଃ ପୁନର୍ବାର ପଚାରିଲା, "ବାପା ! ସେ ମୟୂରଛୁଆଟିକୁ ମୋତେ ଧରିଆଣି ଦେଲେ ମୁଁ ତାକୁ ପୋଷା ମନାଇବି । ଆହା କି ସୁନ୍ଦର ! ସତେକି ମନ କିଣି ନେଉଛି ।

ବାପା କିନ୍ତୁ ତା କଥାରେ ଆପତ୍ତି ଜଣାଇଲେ । କହିଲେ, "ମୟୂର ଏକ ଜାତୀୟ ପକ୍ଷୀ । ଏବେ ଘରମାନଙ୍କରେ ବଣୁଆ ପଶୁପକ୍ଷୀଙ୍କୁ ପାଖରେ ରଖିବା ସଂପୂର୍ଣ୍ଣ ନିଷେଧ କରାହୋଇଛି । ଯେ ପାଳୁଛି, ସେ ଯଦି ଧରାପଡ଼େ, ସରକାରଙ୍କ ଦ୍ୱାରା ଜେଲ ଭୋଗିବ ବା ଅର୍ଥ ଦଣ୍ଡରେ ଦଣ୍ଡିତ ହେବ ।"

ସୁନି ବାପାଙ୍କ କଥାକୁ ସତେଯେପରି ଛଡ଼ାଇନେଇ କହିଲା, "ହଁ ବାପା ! ଆମ ଶିକ୍ଷକ ମଧ୍ୟ ଆମକୁ ଶ୍ରେଣୀରେ ସେଇ କଥା କହୁଥିଲେ । ଜଙ୍ଗଲର ପଶୁପକ୍ଷୀଙ୍କ ସକାଶେ ଅନେକ କିଛି ନିୟମ ଲାଗୁ ହେଲାଣି । ଆମେ ଏବେ କରିବା କ'ଣ ? ସେ ତା ମା' ପାଖକୁ ଯିବ କିପରି ?"

ସୁନିର ବାପା ବିଳମ୍ବ ନ କରି ଚାଲି ଚାଲି ଯାଇ ନିକଟରେ ଥିବା ଜଣେ ଫରେଷ୍ଟ ଗାର୍ଡଙ୍କ ପାଖରେ ସବୁକଥା ଜଣାଇଲେ । ସେ ଜାଣିପାରି ଜଙ୍ଗଲ ଅଧିକାରୀଙ୍କୁ ସାଙ୍ଗରେ ଧରି ସୁନି ଘର ପାଖରେ ହାଜର ହୋଇଗଲେ । କୌଶଳକ୍ରମେ ଜାଲ ବିଛାଇ ସେ ଦୁହେଁ ମୟୂରଛୁଆଟିକୁ କରାୟତ୍ତ କରି ସାଙ୍ଗରେ ନେଇଗଲେ ଓ ଜଂଗଲରେ ଛାଡ଼ିଦେଲେ ।

ସୁନି କିନ୍ତୁ ତା'ପରଠୁ ଭଲରେ ଖିଆପିଆ କଲା ନାହିଁ । ମନ ମାରି ଗୋଟିଏ ସ୍ଥାନରେ ବସି ରହିଲା । ସେ ମୟୂରଛୁଆଟି କଥା ମନେ ମନେ ଭାବି ଚାଲିଥାଏ । ତା'ର ନୀଳ ବର୍ଣ୍ଣର ଛଳ ଛଳ ମୁହଁଟି ଆଖି ସାମନାରେ ଭାସି-ଆସୁଥାଏ ଯେପରି । କାରଣ ସେ ଜାଣିଛି ମା'ପାଖରୁ ତାକୁ ଦୂରରେ ରଖିଲେ ତା'ର ମନ ଯେମିତି ଦୁଃଖ ହୁଏ, ମୟୂରଛୁଆର ମନ ବି ସେମିତି ହେଉଥିବ । ଖାଲି ଈଶ୍ୱରଙ୍କୁ ଡାକୁଥାଏ, ଛୁଆଟି ତା' ମାଆକୁ ଦେଖିପାରୁ ।

*ସିଦ୍ଧ ମହାବୀର, ପୁରୀ* ❋❋

---

# ଭାରତରେ ପ୍ରଚଳିତ କେତେକ ହିନ୍ଦୁ ପାରମ୍ପରିକ ପ୍ରଥା



ବିବାହିତା ସ୍ତ୍ରୀମାନେ ସିନ୍ଦୂର ପିନ୍ଧିବାରେ ମଧ୍ୟ ଏକ ବିଜ୍ଞାନସମ୍ମତ କାରଣ ରହିଛି । ଏହା ହଳଦୀ ଓ ଲେମ୍ବୁର ମିଶ୍ରଣ ଏବଂ ଅଭ୍ରରେ ତିଆରି ହୋଇଥାଏ । ଅଭ୍ର ରକ୍ତଚାପକୁ ନିୟନ୍ତ୍ରଣ କରେ । ଯୌନ ପିପାସାକୁ ବୃଦ୍ଧି କରାଏ । ସେଥିପାଇଁ ବିଧବା ମହିଳାମାନେ ସିନ୍ଦୂର ଲଗାନ୍ତି ନାହିଁ ।

ସିନ୍ଦୂରକୁ ତାହାଣରେ ପିଟ୍ୟୁଟାରୀ ଗ୍ଲାଣ୍ଡ ପାଖରେ ଲଗାଇଲେ ଭଲ ଫଳ ଦିଏ, ଯେଉଁଠାରେ ଆମର ଅନୁଭବ କରିବାର ଶକ୍ତି କେନ୍ଦ୍ରୀଭୂତ ହୋଇଥାଏ । ଅଭ୍ର ମଧ୍ୟ ଆମର ଭାରାକ୍ରାନ୍ତ ମସ୍ତିଷ୍କକୁ ହାଲୁକା କରିଥାଏ ।



# କିଏ କହିପାରିବ

ଶ୍ରୀ ମାଧବାନନ୍ଦ ପଣ୍ଡା

ସେଦିନ ପ୍ରବଳ ବର୍ଷା ହେଉଥାଏ । ସ୍କୁଲ ଛୁଟି କରିଦିଆଗଲା; ମାତ୍ର ଆମେ ଯିବୁ କେମିତି ? ପ୍ରଧାନ ଶିକ୍ଷକ ଆମ ଶ୍ରେଣୀକୁ ପଶିଆସିଲେ । କହିଲେ, "ପିଲାମାନେ, ଆଜି ଗୋଟେ ବୁଦ୍ଧି ପରୀକ୍ଷା ଖେଳ ଖେଳିବା । ଯିଏ ଠିକ୍ ଉତ୍ତର ଦେଇପାରିବ, ତାକୁ ଗୋଟେ ପୁରସ୍କାର ଦିଆଯିବ ।'' ସେଇଠୁ ସେ ଏଇ ପହେଳିଟି କହିଲେ ।

ଗଣନାଥଙ୍କର ଗଜ ବଦନ
ଛଅ ମାତାଙ୍କର କିଏ ସନ୍ତାନ ?
ଲମ୍ବୋଦରଙ୍କର କିଏ ବାହନ
ଗାଈ ପୂଜି କେ ଲଭିଲେ ସନ୍ତାନ ?
ଇଦ୍ ପର୍ବ କେ କରନ୍ତି ପାଳନ
ବାଦ ବିସମ୍ବାଦେ ନ ବଳା ମନ ।
ଭଲ କାମ ପରା ଅଟଇ ଭାଇ
ଲଢ଼ଇ ସୈନିକ ଦେଶର ପାଇଁ ।
କାଳାନ୍ତକ ବୋଲି କାହାକୁ କହି
ମଘବା କେଉଁଠାରେ ଥା'ନ୍ତି ରହି ?
ଆଦ୍ୟରେ ଅଛି ସେ ପ୍ରାନ୍ତରେ ନାହିଁ
ଯିଏ କହିବଟି ବୁଦ୍ଧିଆ ସେହି ।

ଆମର ଅକଲ୍ ଗୁଡୁମ୍ । ସେଠୁ ସାର୍ ଜଣ ଜଣ କରି ପଚାରିଲେ— ଆଚ୍ଛା କହିଲୁ ଗୌତମ, ଛଅମାତାଙ୍କର କିଏ ସନ୍ତାନ ? ଗୌତମ କହିଲା— କାର୍ତ୍ତିକେୟ, କାରଣ କାର୍ତ୍ତିକେୟଙ୍କୁ ଷାଣ୍ମାତୁର ବୋଲି କୁହାଯାଏ । ତା'ପରେ ସାର୍ ପଚାରିଲେ— କହିଲୁ ସରୋଜିନୀ, ଲମ୍ବୋଦରଙ୍କର କିଏ ବାହନ ? ସରୋଜିନୀ କହିଲା, ଗଣେଶଙ୍କର ଅନ୍ୟ ନାମ ଲମ୍ବୋଦର । ତାଙ୍କ ବାହନ ମୂଷା । ସେଇଠୁ ସେ ପଚାରିଲେ ବିଜୟକୁ— କହିଲୁ, ଗାଈଙ୍କୁ ସେବା କରି କିଏ ସନ୍ତାନ ଲାଭ କରିଥିଲେ ?

କେହି ଏ ପ୍ରଶ୍ନର ଉତ୍ତର ଦେଇ ନ ପାରିବାରୁ ପ୍ରଧାନ ଶିକ୍ଷକ କହିଲେ କିପରି ଅପୁତ୍ରକ ରାଜା ଦିଲ୍ଲୀପ ଗୁରୁ ବଶିଷ୍ଠଙ୍କ ଆଶ୍ରମରେ ଥିବା ସୁରଭିଙ୍କର କନ୍ୟା ନନ୍ଦିନୀଙ୍କର ସେବା କରି ତାଙ୍କଠାରୁ ବରପ୍ରାପ୍ତ ହୋଇ ରଘୁ ନାମକ ପୁତ୍ରସନ୍ତାନ ଲାଭ କରିଥିଲେ । ତା'ପରେ ସାର୍ ପଚାରିଲେ, ''କହିଲୁ ମନ୍ଦାକିନୀ, ଇଦ୍ ପର୍ବ କେଉଁମାନେ ପାଳନ କରନ୍ତି ?'' ମନ୍ଦାକିନୀ ଝଟ୍ କରି ଉତ୍ତରଦେଲା— ମୁସଲମାନ୍ ଭାଇଭଉଣୀମାନେ । ସହଜେ ରୋଶନାରା ମନ୍ଦାକିନୀର ଘନିଷ୍ଠ ସାଙ୍ଗ । ତା'ପରେ କେତେ ଧାଡ଼ି ତ ବୁଝି ହେଉଛି, ତେବେ କାଳାନ୍ତକ କାହାକୁ କହନ୍ତି ? କେହି କହି ନ ପାରିବାରୁ ପ୍ରଧାନ ଶିକ୍ଷକ କହିଲେ— ଯମଦେବତାଙ୍କୁ କାଳାନ୍ତକ କୁହାଯାଏ । ତା' ପର ଧାଡ଼ିର ଅର୍ଥ ବିଷ୍ଣୁକୁ ପଚାରିବାରୁ ସେ କହିଲା— ମଘବା ହେଉଛନ୍ତି ଇନ୍ଦ୍ର । ତାଙ୍କ ରାଜଧାନୀର ନାମ ସ୍ୱର୍ଗର ଅମରାବତୀ । ପ୍ରଧାନଶିକ୍ଷକ ତାକୁ ଧନ୍ୟବାଦ ଦେଇ କହିଲେ— ତୁମେ ଭାବୁଥିବ ଏ ପରସ୍ପର ସହିତ ସମ୍ବନ୍ଧ ନ ଥିବା ପହେଳିରେ କ'ଣ ଥାଇପାରେ । ତେବେ ଟିକେ ମୁଣ୍ଡ ଖର୍ଚ୍ଚ କଲେ ତୁମେ ଉତ୍ତରଟି ପାଇଯିବ । ଏ ପହେଳି ଭିତରେ ଗୋଟିଏ ବାର୍ତ୍ତା ଅଛି ।

କିଛି ସମୟ ଚିନ୍ତା କଲା ପରେ କେତେ ଜଣ ହାତ ଟେକିଲେ । ପ୍ରଧାନ ଶିକ୍ଷକ ଚଗୁଲୁକୁ ପଚାରିବାରୁ ସେ ଠିକ୍ ଉତ୍ତରଟି କହିଦେଲା । ପ୍ରଧାନ ଶିକ୍ଷକ ଖୁସି ହୋଇ ତାକୁ ଚକ୍‌ଖଡ଼ିଟିଏ ପୁରସ୍କାର ଦେଲେ ।

ଚଗୁଲୁ କ'ଣ ଉତ୍ତରଦେଲା, ତୁମେ କହିପାରିବ କି ?

*୩୩-ନୟନବିହାର, କସୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା-୭୫୪୨୫୦*

(ଉତ୍ତର ୪୯ ପୃଷ୍ଠାରେ)

# ଲକ୍ଷ୍ୟପ୍ରାପ୍ତିର ଉପାୟ

ଲକ୍ଷ୍ମୀପ୍ରିୟା ଦାସ

ପୋଖରୀ କୂଳରେ ଚିକ୍କଣିଆ ଖମ୍ବ
ରହିଥିଲା କେଉଁ କାଳୁ
ବେଙ୍ଗମାନେ ଦିନେ ବିଚାର କରିଲେ
ଗୋଡ଼ାଗୋଡ଼ି ଖେଳୁ ଖେଳୁ ।
ସ୍ତମ୍ଭର ଅଗ୍ରକୁ ଚଢ଼ିଯିବ ଯିଏ
ପାଇବ ପ୍ରଥମ ସ୍ଥାନ
ବାର୍ଷିକ ଉତ୍ସବେ ବେଙ୍ଗରାଜା ତାକୁ
ଦେବେ ଉପହାରମାନ ।
ପ୍ରତିଯୋଗୀମାନେ ସ୍ତମ୍ଭ ଆରୋହଣ
କଲେ ଏକ ପରେ ଆନ
ଦେଖୁଥିବା ବେଙ୍ଗ ଉତ୍ସାହିତ କଲେ
ଦେଇ କରତାଳିମାନ ।
ଆଉ କେତେ ବେଙ୍ଗ କଥା ହେଉଥିଲେ
କୂଳେ ବସି ହସି ହସି
ଯିଏ ବି ଚଢ଼ିବ ଖସଡ଼ା ସ୍ତମ୍ଭରେ
ଅଧାରୁ ପଡ଼ିବ ଖସି ।
ପ୍ରତିଯୋଗୀମାନେ ଜଣ ପରେ ଜଣେ
ଖସୁଥିଲେ ଚଢୁଚଢୁ
ନିରାଶ ଦର୍ଶକ ବ୍ୟଥା ପାଉଥିଲେ
ବେଳ ଟିକେ ଗଡୁଗଡୁ ।
ବେଙ୍ଗ ମାଆଟିଏ କହିଲା ପୁଅକୁ
"ତୁ କେବେ ଯିବୁନି ହାରି ।
ଚଢ଼ିବା ବେଳକୁ କାହାରି କଥାକୁ
ଶୁଣିବୁନି କାନ ଡେରି ।"
ମାଆ କଥା ମାନି ଚଢ଼ିଲା ପିଲାଟି
ସଫଳତା କଲା ଲାଭ
ସ୍ତବ୍ଧ ହୋଇଗଲା ପୋଖରୀ ରାଇଜ
ହଲିଲାନି କାହା ଜିଭ ।
ପୋଖରୀ କୂଳରେ ପାଣିର ମଝିରେ
ବେଙ୍ଗକୁଳ ଚକିତରେ
ପଚାରିଲେ ତାକୁ ଚଢ଼ିଲା କିପରି
ଏତେ ଖସଡ଼ା ସ୍ତମ୍ଭରେ ।
ବେଙ୍ଗଟି କହିଲା, "ମାଆ କଥା ମାନି
ନିଜେ ବଧୀର ଭାବିଲି,
କାହାରି କଥାକୁ ଶୁଣିବିନି ବୋଲି
ମନରେ ନିଷ୍ପତ୍ତି କଲି ।
ଯେଉଁ କଥା ଶୁଣି ପୂର୍ବ ପ୍ରତିଯୋଗୀ
ଚଢ଼ିପାରିଲେନି ସ୍ତମ୍ଭ
ସେଇ ସବୁ କଥା ଶୁଣିଲିନି ବୋଲି
ବଢ଼ି ଚାଲିଲା ମୋ ଦମ୍ଭ ।
ଏକାଗ୍ରତା ସହ ନିରନ୍ତର ଚେଷ୍ଟା
କରିଛି ମୋତେ ସଫଳ,
ମାଆ କଥା ମାନି ଜିତି ମୁଁ ସାରିଛି
ବଢ଼ିଛି ମୋ ମନୋବଳ ।"

*ସୁଦର୍ଶନ ନଗର, ପୁରୀ- ୭୫୨୦୦୨*

# ଦୁର୍ଯୋଗରୁ ସୁଯୋଗ

ଶ୍ରୀ ଯୁଗଳ କିଶୋର ଷଡଙ୍ଗୀ

ମଣିଷ ଜୀବନରେ ଅନେକ ଝଡ଼ଝଞ୍ଜା ଆସିଥାଏ । ସେ ସବୁକୁ ମୁକାବିଲା କରି ମଣିଷ ଚାଲିଥାଏ । ନିଜ ଭାଗ୍ୟକୁ ଆଦରି ରହିଥାଏ । ମଣିଷ କହିଥାଏ, "ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ ।'' ଇତିହାସରୁ ଜଣାପଡ଼େ ଯେ ପୃଥିବୀରେ ବଡ଼ ବଡ଼ ଲୋକମାନେ ମଧ୍ୟ ବିଭିନ୍ନ ଝଡ଼ଝଞ୍ଜା, ଦୁର୍ଘଟଣା ମଧ୍ୟରେ ଗତି କରି ସୁନାମ ଅର୍ଜନ କରିପାରିଛନ୍ତି । ସେମାନଙ୍କ ମଧ୍ୟରୁ କେତେକଙ୍କ ଜୀବନରୁ ଆମେ ଅନେକ ବିଷୟ ଜାଣି ପାରିବା ।

ଦିନେ ଏଚ୍.ଜି.ୱେଲସ୍ ସାଙ୍ଗମାନଙ୍କ ସହ ଉପର ମହଲା ବାରଣ୍ଡାରେ ଖେଳୁଥିଲେ । ବହୁତ ପାଟି କରି ଅନ୍ୟମାନଙ୍କୁ ଅସୁବିଧାରେ ପକାଉଥିଲେ । ତାଙ୍କର ଜଣେ ସାଙ୍ଗ ଥରେ ବହୁତ ଖପ୍ପା ହୋଇ ୱେଲସ୍‌ଙ୍କୁ ଟେକି ନେଲେ ଓ ଉପର ମହଲାରୁ ତଳକୁ ଛାଡ଼ିଦେଲେ । ଏଥିରେ ୱେଲସ୍‌ଙ୍କର ଗୋଡ଼ ଭାଂଗିଗଲା । ଦୀର୍ଘ ବର୍ଷ ଧରି ସେ ଡାକ୍ତରଖାନାରେ ପଡ଼ି ରହିଲେ । ସମୟ କାଟିବା ପାଇଁ



ସେ ଅନେକ ବହି ପଢ଼ି ବସିଲେ । ବହି ପଢ଼ିବାର ଅଭ୍ୟାସ ଏତେ ପରିମାଣରେ ବଢ଼ି ଚାଲିଲା ଯେ ସେ ଲଖାଲେଖି ଆରମ୍ଭ କଲେ । ଭଂଗାଗୋଡ଼ ତାଙ୍କୁ ସମାଜରେ ଏକ ବିଖ୍ୟାତ ଇଂରେଜ ଲେଖକ ଭାବେ ଠିଆ କରାଇଲା । ଦୁର୍ଯୋଗ କାଳକ୍ରମେ ସୁଯୋଗରେ ପରିଣତ ହେଲା ।



ଓ୍ୱ ହ୍ୟାନେରୀ ଜଣେ ବ୍ୟାଙ୍କ୍ କେସିଅର ଥିଲେ । ଦିନେ ତାଙ୍କର ଉପର ଅଫିସର ଆସି ଯାଞ୍ଚ୍ କଲେ । ଟଂକାପଇସାରେ କମ୍‌ବେଶୀର ହିସାବ ରେଜିଷ୍ଟରରୁ ଜାଣିଲେ । ହ୍ୟାନେରୀଙ୍କର ଭୁଲ୍ ପ୍ରାୟ ନ ଥିଲା; ତଥାପି ଅର୍ଥ ତୋଷରପାତ ଅଭିଯୋଗରେ ହ୍ୟାନେରୀଙ୍କୁ ଗିରଫ୍ କରାଗଲା । ପାଞ୍ଚବର୍ଷ ପାଇଁ ତାଙ୍କୁ ଜେଲ୍‌କୁ ପଠାଗଲା । ଏହି ଅବସ୍ଥାରୁ କିଛି ମୁକ୍ତି ପାଇବା ପାଇଁ ସେ କ୍ଷୁଦ୍ରଗଳ୍ପ ଲେଖିବା ଆରମ୍ଭ କଲେ । ସମୟକ୍ରମେ ଆଧୁନିକ ଯୁଗର ସେ ଜଣେ ଶ୍ରେଷ୍ଠ ଗାଳ୍ପିକ ହୋଇପାରିଥିଲେ । ଜେଲ୍‌ଦଣ୍ଡ ତାଙ୍କ ପାଇଁ ଆଶୀର୍ବାଦ ହୋଇପାରିଥିଲା ।

ପୋଲାଣ୍ଡର ମ୍ୟାଡାମ୍‌କ୍ୟୁରୀ ଜଣେ ଦଶ ବର୍ଷର ଝିଅକୁ ଟ୍ୟୁସନ୍ କରୁଥିଲେ । କ୍ୟୁରୀଙ୍କର ଆର୍ଥିକ ଅବସ୍ଥା ଖରାପ ଥିଲା । ଧନୀ ଘରେ ଟ୍ୟୁସନ୍ କରି ବେଶ୍ ଦୁଇ ପଇସା ଅର୍ଜନ କରୁଥିଲେ । ଦୁର୍ଯ୍ୟୋଗକୁ ଧନୀଘରର

ବଡ଼ପୁଅ କ୍ୟୁରୀଙ୍କୁ ବିବାହ କରିବା ପାଇଁ ଇଚ୍ଛା କଲେ । କିନ୍ତୁ ଗରିବ ଝିଅକୁ ବୋହୂ କରିବା ପାଇଁ ପୁଅର ମାଆ ଆଦୌ ରାଜି ହେଲେନାହିଁ । ବରଂ ରାଗରେ କ୍ୟୁରୀଙ୍କୁ ଅନେକ ନିର୍ଯ୍ୟାତନା ଦେଇଥିଲେ । ଶେଷରେ କ୍ୟୁରୀ ବିରକ୍ତିର ସହ ପୋଲାଣ୍ଡ୍ ଛାଡ଼ିଲେ ।

ଭାଗ୍ୟର ବିପର୍ଯ୍ୟୟ ବୋଲି ଭାବି ସେ ଫ୍ରାନସ୍‌ର ରାଜଧାନୀ ପ୍ୟାରିସ୍ ସହରକୁ ଚାଲିଗଲେ । ସେଠାରେ ସେ ମନ ପରିବର୍ତ୍ତନ ପାଇଁ ପଢ଼ାପଢ଼ି ଆରମ୍ଭ କଲେ । କ୍ରମେ ତାଙ୍କର ଠିକ୍ ସମୟ ଆସିଲା । ରେଡିୟମ୍ ଉଦ୍ଭାବନ କରି ସେ ୧୯୧୧ରେ ନୋବେଲ୍ ପୁରସ୍କାର ଗ୍ରହଣ କରିଥିଲେ । ଜଣେ ଟ୍ୟୁସନ୍ କରୁଥିବା ଗରିବ ବିଫଳ ଶିକ୍ଷୟିତ୍ରୀଙ୍କୁ ତାଙ୍କର ଦୁର୍ଘଟଣା ହିଁ ସଫଳର ପାହାଚକୁ ନେଇଥିଲା ।

*ନୀଳଚକ୍ରନଗର, ଟିଟିଲାଗଡ଼, ବଲାଙ୍ଗୀର*

❋❋

# ନିଜକୁ ନିଜେ ସାହାଯ୍ୟ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ହଜରତ୍ ଉମର ବିନ୍ ଅବଦୁଲ ଅଜିଜ୍ ଥିଲେ ମୁସଲମାନମାନଙ୍କର ଖଲିଫା ବା ଧର୍ମଗୁରୁ । ସେ ଥିଲେ ବଡ଼ ସାଧୁ ପ୍ରକୃତିର ବ୍ୟକ୍ତି, ଅତି ସରଳ ଓ ଧାର୍ମିକ ।

ଦିନେ ତାଙ୍କ ନିକଟରେ ପହଞ୍ଚିଲେ ଜଣେ ଅତିଥି । ସେହି ସମୟରେ ଖଲିଫା ଦୀପ ଲଗେଇ କିଛି ଲେଖାଲେଖି କରୁଥିଲେ । ସେତେବେଳକୁ ଦୀପର ତେଲ ସରିଗଲା । ତେଣୁ ଟିକିଏ ଧପ୍ ଧପ୍ ହେବା ପରେ ଦୀପଟି ଲିଭିଗଲା । ଏହା ଦେଖି ଅତିଥି ଜଣଙ୍କ କହିଲେ, "ଆପଣ କିଛି ବ୍ୟସ୍ତ ହୁଅନ୍ତୁନି, ମୁଁ ସେଥିରେ ତେଲ ଦେଇ ପୁଣି ବତି ଲଗେଇ-ଦେଉଛି ।" ଅତିଥିଙ୍କ ତୁଣ୍ଡରୁ ଏହା ଶୁଣି ଖଲିଫା ତାଙ୍କୁ କହିଲେ, "ଆଜ୍ଞା ! ଅତିଥିମାନଙ୍କଠାରୁ କୌଣସି ସେବା ନେବା ଆଦୌ ଶୋଭନୀୟ ନୁହେଁ । ତେବେ ଆପଣ ଯେ ମୋତେ ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସିଲେ, ସେଥିପାଇଁ ମୁଁ କୃତଜ୍ଞ ।"



ଖଲିଫାଙ୍କର ଏଭଳି ଆଚରଣ ଖୁବ୍ ଭଲଲାଗିଲା ଅତିଥିଙ୍କୁ । ତେଣୁ ସେ ପୁଣି ଥରେ କହିଲେ, "ତାହାହେଲେ ମୁଁ ଜଣେ ଚାକରକୁ ନିଦରୁ ଉଠେଇଦେଉଛି । ସେ ଦୀପରେ ତେଲ ଭରିଦେବ ।"

"ନା, ନା ସେପରି କରନ୍ତୁନି । ବିଚରା ଚାକରଟିକୁ ନିଦରୁ ଉଠେଇ ଦିଅନ୍ତୁନି । ଅନେକ କାମ କରି ସାରି ସେ ଏଇ ଟିକକ ଆଗରୁ ଶୋଇବାକୁ ଗଲା । ସେଥିପାଇଁ ତା'ର ନିଦ ଭାଙ୍ଗି ଦେଇ ତାକୁ ହଇରାଣ କରିବା ଜମା ଉଚିତ ନୁହେଁ ।"

ଏତିକି କହି ଖଲିଫା ନିଜ ଆସନରୁ ଉଠି ପଡ଼ିଲେ । ଦୀପଟିକୁ ଧରି ନିଜେ ଯାଇ ସେଥିରେ ତେଲ ଢାଳିଲେ । ତା'ପରେ ଦୀପଟିକୁ ଆଣି ବତିରେ ନିଆଁ ଲଗେଇଦେଲେ ।

ଏହା ଦେଖି ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ ଅତିଥିଜଣଙ୍କ । ଖଲିଫାଙ୍କୁ ଚାହିଁ ସେ କହିଲେ, "ଆପଣଙ୍କୁ ବଡ଼ ଅସୁବିଧାରେ ପଡ଼ିବାକୁ ହେଲା ।"

ଖଲିଫା ଉତ୍ତରଦେଲେ, "କ'ଣ ହୋଇଗଲା ସେଇଠୁ ? ଏଥିରେ ଅସୁବିଧାର ପ୍ରଶ୍ନ ଉଠୁଛି କୁଆଡୁ ? ଭାବି ଦେଖନ୍ତୁ ତ ମହାଶୟ, ଦୀପରେ ତେଲ ଭରିବା ପୂର୍ବରୁ ମୁଁ 'ଉମର' ଥିଲି ନାଁ ନାହିଁ ?"

"ହଁ, ଆପଣ ଉମର ଥିଲେ ।" ଉତ୍ତରଦେଲେ ଅତିଥି । ଆସିବା ପରେ ସେଇ 'ଉମର' ହିଁ ତ ରହିଛି । ହଁ ନା ନାହିଁ ?"

"ହଁ", ବିସ୍ମୟରେ ଉତ୍ତରଦେଲେ ଅତିଥି ।

ଏହିପରି ମହାନ୍ ତଥା ଦରଦୀ ଥିଲେ ଖଲିଫା ଉମର ଅବଦୁଲ୍ ଅଜିଜ୍ ।

*'ଅଭୀପ୍ସା', ସେକ୍ଟର- ୬, ପ୍ଲଟ ନଂ- ୧୧୩୧, ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*




| | | | | |
|---|---|---|---|---|
| ୧. | ଗୌରୀଶଙ୍କର ରାୟ | ଡକ୍ଟର ଗୋବିନ୍ଦଚନ୍ଦ୍ର ଚାନ୍ଦ | ଟ. | ୮୦.୦୦ |
| ୨. | କୋଟିପ୍ରାଣର ମଣିଷ ପ୍ରାଣନାଥ | ଅବନୀ କୁମାର ବରାଳ | ଟ. | ୧୦୦.୦୦ |
| ୩. | କବି ବିନୋଦଚନ୍ଦ୍ର ନାୟକ | ଶ୍ରୀ ଅଶ୍ୱିନୀ କୁମାର ମିଶ୍ର | ଟ. | ୬୦.୦୦ |
| ୪. | ସାହିତ୍ୟିକ ଭାରତଚନ୍ଦ୍ର ନାୟକ | ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ | ଟ. | ୮୦.୦୦ |
| ୫. | ନାଟ୍ୟକାର ରାମଚନ୍ଦ୍ର ସ୍ୱାଇଁ | ଶ୍ରୀ ରମେଶ ଦଳାଇ | ଟ. | ୬୦.୦୦ |
| ୬. | ଅନନ୍ତ ପ୍ରସାଦ | ଡକ୍ଟର ବିଜୟାନନ୍ଦ ସିଂହ | ଟ. | ୮୦.୦୦ |
| ୭. | ବଂଶୀବଲ୍ଲଭ ଗୋସ୍ୱାମୀ | ଡକ୍ଟର ବାଇଧର ସାହୁ | ଟ. | ୮୦.୦୦ |
| ୮. | ଗଙ୍ଗାଧର ରଥ | ଡକ୍ଟର ବିଜୟାନନ୍ଦ ସିଂହ | ଟ. | ୮୦.୦୦ |
| ୯. | ଝିଅ ଓ ଅନ୍ୟାନ୍ୟ କବିତା | ଡକ୍ଟର ରଜନୀ ରଣସିଂହ | ଟ. | ୮୦.୦୦ |
| ୧୦. | ପ୍ରଥମ ପର୍ବ | ଶ୍ରୀ ଗିରିଜା ପ୍ରସାଦ ମିଶ୍ର | ଟ. | ୫୦.୦୦ |
| ୧୧. | ଶବ୍ଦର ସୀମାରେଖା | ଶ୍ରୀ ଦେବପ୍ରିୟ ପ୍ରିୟଦର୍ଶୀଚକ୍ର | ଟ. | ୮୦.୦୦ |
| ୧୨. | କ୍ରୀତଦାସର କାବ୍ୟ | ଶ୍ରୀ କିଶୋରଚନ୍ଦ୍ର ସାହୁ | ଟ. | ୮୦.୦୦ |
| ୧୩. | ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟ | ସଂ : ଡଃ କୈଳାସଚନ୍ଦ୍ର ଟିକାୟତରାୟ ଶ୍ରୀ ବୀରେନ୍ଦ୍ର ମହାନ୍ତି | ଟ. | ୨୦୦.୦୦ |
| ୧୪. | ଓଡ଼ିଆ ଛୋଟନାଟକ ସଂକଳନ | ସଂ: ଡକ୍ଟର ନୀଳାଦ୍ରି ଭୂଷଣ ହରିଚନ୍ଦନ ଓ ଡକ୍ଟର ବିଜୟ କୁମାର ଶତପଥୀ | ଟ. | ୩୫୦.୦୦ |
| ୧୫. | କବିତା କୋଣାର୍କ | ସଂ: ଡଃ ପ୍ରମୋଦ କୁମାର ମହାନ୍ତି ଓ ଶ୍ରୀ କମଳାକାନ୍ତ ପଣ୍ଡା | ଟ. | ୩୫୦.୦୦ |
| ୧୬. | ଆଦିବାସୀ ଲୋକ କାହାଣୀ | ସଂ: ଡଃ ଦମୟନ୍ତୀ ବେଶ୍ରା ଓ ଡଃ ନାକୁ ହାଁସଦାଃ | ଟ. | ୧୦୦.୦୦ |
| ୧୭. | ଉତ୍କଳ ବିବିଧ ପ୍ରସଙ୍ଗ(ହିନ୍ଦୀ) | ସଂ: ଡଃ ଶଙ୍କରଲାଲ ପୁରୋହିତ, ଡଃ ବସନ୍ତ କୁମାର ପଣ୍ଡା | ଟ. | ୩୫୦.୦୦ |
| ୧୮. | ମୋ ବାରବୁଲା ଜୀବନ (ବଙ୍ଗଳା) | ଅ: ଶ୍ରୀ ସାଫଲ୍ୟ କୁମାର ନନ୍ଦୀ | ଟ. | ୨୦୦.୦୦ |
| ୧୯. | ଲଛମା (ବଙ୍ଗଳା) | ଅ: ଶ୍ରୀମତୀ ଭାରତୀ ନନ୍ଦୀ | ଟ. | ୧୦୦.୦୦ |
| ୨୦. | ଅମୃତ ଅନୁଭବ (ହିନ୍ଦୀ) | ଅ: ଶ୍ରୀ କୃଷ୍ଣକୁମାର ଅଜନବୀ | ଟ. | ୩୦୦.୦୦ |
| ୨୧. | ଆଦିକବି ସାରଳା ଦାସ କୃତ ଓଡ଼ିଆ ମହାଭାରତ (ହିନ୍ଦୀ) ଆଦିପର୍ବ, ମଧ୍ୟପର୍ବ | ଅ : ଡକ୍ଟର ନୀଳାଦ୍ରି ଭୂଷଣ ହରିଚନ୍ଦନ ଡକ୍ଟର ହରିଶ୍ଚନ୍ଦ୍ର ମିଶ୍ର | ଟ. | ୭୫୦.୦୦ |

**ସ୍ୱତନ୍ତ୍ର ରିହାତି**

୫୦୦ ଟଙ୍କା ପର୍ଯ୍ୟନ୍ତ ମୂଲ୍ୟର ପୁସ୍ତକ ପାଇଁ - ୨୦%

୫୦୧ ଟଙ୍କାରୁ ୨୦୦୦ ଟଙ୍କା ମୂଲ୍ୟର ପୁସ୍ତକ ପାଇଁ - ୩୦%

୨୦୦୧ ଟଙ୍କାରୁ ଉର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ ପାଇଁ - ୪୦%

**ଶ୍ରୀ ସାତକଡ଼ି ହୋତା** — ସଭାପତି

**ଶ୍ରୀମତୀ ଗାୟତ୍ରୀ ସରାଫ** — ଉପସଭାପତି

**ଶ୍ରୀ ଅଶ୍ୱିନୀ କୁମାର ମିଶ୍ର** — ସଚିବ

# ଉତ୍ତରାଞ୍ଚ

ଶ୍ରୀ କାଞ୍ଚନାରାୟଣ ମହାନ୍ତି

## ବଲିଉଡ୍ ଅଭିନେତ୍ରୀ ଦିୟା ମିର୍ଜା– ଓଡ଼ିଶାପ୍ରେମୀ

ଐତିହାସିକ ସହର କଟକ । ସୁନାରୁପା, ତାରକସି କାମର ସୂକ୍ଷ୍ମ କାରୁକାର୍ଯ୍ୟ ପାଇଁ ସୁପ୍ରସିଦ୍ଧ ସେହି ସହରରେ ଶହ ଶହ ସୁନାରୁପା, ହୀରାଅଳଙ୍କାର ବିକ୍ରି ହୁଏ । ଅନେକ ସିଦ୍ଧହସ୍ତ ବଣିଆ, ସ୍ୱର୍ଣ୍ଣକାର ଏହି ସହରରେ ନିରତ କାର୍ଯ୍ୟରତ; ନତୁବା ଏତେ ଏତେ ଚାନ୍ଦି ମୁକୁଟ, ଚାନ୍ଦିମେଢ଼ କେମିତି ପ୍ରତିବର୍ଷ ଦେବୀ ଦୁର୍ଗାଙ୍କ ପାଇଁ ତିଆରି ସମ୍ଭବ ହେଉଛି ?

ଏମିତି ଏକ ସ୍ୱର୍ଣ୍ଣାଭ ସହର କଟକରେ ପୂଜାର ଅବ୍ୟବହିତ ପୂର୍ବରୁ ଲାଲ୍‌ଚାନ୍ଦ ଜୁୟେଲର୍ ପକ୍ଷରୁ ଏକ ସୋ ରୁମ୍ ଉଦ୍‌ଘାଟନ କରିବା ପାଇଁ ବଲିଉଡ୍ ଅଭିନେତ୍ରୀ ଦିୟା ମିର୍ଜା କଟକ ଆସିଥିଲେ ।

ସେହି ଅବସରରେ ତାଙ୍କୁ ସିନେ ସାମ୍ବାଦିକମାନେ ସାକ୍ଷାତ କରିଥିଲେ ।

ସେ କହିଲେ– ଓଡ଼ିଶା ଆସିବା ତାଙ୍କ ପକ୍ଷରେ ପ୍ରଥମ ନୁହେଁ, ଏହା ପୂର୍ବରୁ ସେ ତିନିଥର ଓଡ଼ିଶା ଆସିଛନ୍ତି । ଏବେ କିନ୍ତୁ ଓଡ଼ିଶାରେ ଅନେକ ପରିବର୍ତ୍ତନ ଦେଖିବାକୁ ମିଳୁଛି । ଅତ୍ୟାଧୁନିକ ସହରର ଆଭିଜାତ୍ୟ ଝଲସି ଉଠୁଛି । ତିନି ବର୍ଷ ପୂର୍ବର ଓଡ଼ିଶାକୁ ଚିହ୍ନି ହେଲାନାହିଁ । ଏଥିସହିତ କଟକ ସହର ଏକ ବହୁ ପୁରାତନ ସହର । ଏଠାରେ ବହୁ କଳାକାର ରହନ୍ତି । ସେହି ସାଂସ୍କୃତିକ ସହରରେ ତାଙ୍କର ଏତେ ପ୍ରଶଂସକ ଦେଖି ସେ ଆମୋଦିତ ହୋଇଥିଲେ । ଓଡ଼ିଶା ଚଳଚ୍ଚିତ୍ର ଶିଳ୍ପ ଓ ଏହାର କଳାକାରମାନଙ୍କୁ ପ୍ରଶଂସା କରି ସେ ମନମୋହନ ମହାପାତ୍ରଙ୍କ ନିର୍ଦ୍ଦେଶନାର ପ୍ରଶଂସା ମଧ୍ୟ କରିଥିଲେ । ତାଙ୍କ ସହ ମୁଁ ଚଳଚ୍ଚିତ୍ର କରିବି ବୋଲି କହିଥିଲେ । ଓଡ଼ିଆ ଚଳଚ୍ଚିତ୍ର ଜଗତର ନାୟିକାମାନଙ୍କର ଅଭିନୟ ତାଙ୍କୁ ସ୍ପର୍ଶ କରେ । ଓଡ଼ିଆ ଚଳଚ୍ଚିତ୍ରର ନାୟିକା ଅର୍ଚ୍ଚିତା ନାୟକ ବହୁତ ସୁନ୍ଦରୀ ବୋଲି ଟିପ୍‌ପଣୀ ଦେଇଥିଲେ ।

ସେ ନିଜ ସମ୍ପର୍କରେ କହିଥିଲେ ଯେ ଆଜିକାଲି ଅଭିନୟ ଅପେକ୍ଷା ସେ ନିର୍ଦ୍ଦେଶନା ପ୍ରତି ବେଶୀ ଧ୍ୟାନ ଦେଉଛନ୍ତି ।

କଥାପ୍ରସଙ୍ଗରେ କହିଥିଲେ ଯେ ସେ ଓଡ଼ିଆରେ ସିନେମା ନିର୍ମାଣ କରିବେ । ଓଡ଼ିଆ ସିନେମାର ବଳିଷ୍ଠ କହାଣୀକୁ ଠିକ୍ ଅନୁଭବ କଲେ ସେ ଅଭିନୟ ମଧ୍ଯ କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

ଜଣେ ଅନୁଭବୀ ଅଭିନେତ୍ରୀ ଭାବରେ ଦିୟା ମିର୍ଜାଙ୍କର ଅନେକ ସଫଳ ହିନ୍ଦି ଚଳଚ୍ଚିତ୍ର ଏକଦା ଖ୍ୟାତିଲାଭ କରି ଦର୍ଶକମାନଙ୍କୁ ଆବେଗରେ ବାନ୍ଧି ରଖୁଥିଲା । ସେ ଦୀୱାନାପନ୍ ରହୋହେ, ପ୍ରାନ୍ ଯାଏ ପର୍ ବଚନ୍ ନ ଯାଏ , ବବି ଜାସୁସ୍, କୁରବାନ୍, ଫ୍ୟାମିଲି ୱାଲା ଓ ବ୍ଲାକ୍‌ମେଲ୍ ଆଦି ହିନ୍ଦୀ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ । ଏତଦ୍‌ବ୍ୟତୀତ ସେ ଜି-ସିନେ ପୁରସ୍କାର, ଆଇଫା ପୁରସ୍କାର ଇତ୍ୟାଦି ଲାଭ କରିଥିଲେ । ଏବେ ସେ ଅଭିଜ୍ଞ । ତାଙ୍କ ସ୍ଥାନରେ ନୂଆ ଅଭିନେତ୍ରୀମାନଙ୍କର ପ୍ରବେଶ ହୋଇଥିଲେ ମଧ୍ଯ ସେ ବଲିଉଡ୍ ଅଭିନେତ୍ରୀମାନଙ୍କ ମଧ୍ୟରେ ଏବେ ବି ଲୋକପ୍ରିୟ ।

*ଆଶ୍ରମ, ଶ୍ରୀବିହାର କଲୋନୀ, କଟକ- ୭୫୩୦୦୮*

---

ଉତ୍ତର– ଗଛ ଲଗାଇବା ଭଲ କାମ

# ବାଘମାମୁ ଗଲା ସହର

ଡାକ୍ତର ଅଶୋକ କୁମାର ସେଠୀ

ବାଘମାମୁ ଦିନେ ବସି କଲା ବିଚାର
ଜଙ୍ଗଲରେ ନାହିଁ ଆଉ ଭଲ ଆହାର ।
ଆହାର ମିଳିବ ସିନା ଗଲେ ନଗର
କାଉକୁ ପଠାଇଲା କରି ଡଗର ।

"ବୁଲିଆ ଦେଖିବୁ କିଏ ଭଲ ସହର"
ବୁଲିଆସି କାଉ ଦେଲା ମଜା ଖବର ।
ଦିହେଁ ଗଲେ ବୁଲିବାକୁ ଭୁବନେଶ୍ୱର
ଇନ୍ଦିରା ପାର୍କରେ ଯାଇ ହେଲେ ହାଜର ।

ଗଛ ବୁଦା ମୂଳେ ବସି କଲେ ବିଚାର,
ଲୋକମାନେ ଖାଉଛନ୍ତି ଭୁଜା, ମିକ୍ସଚର ।
କଥା ହେଉଛନ୍ତି ବସି ନାନା ପ୍ରକାର
ଗାଡ଼ିମଟର ଚାଲୁଛି କେଁ କଟର ।

ଭାବିଲା ମାମୁ କେମିତି କରିବି ଶିକାର ?
ଗହଳିରେ ଧରିନେଲେ ନାହିଁ ନିସ୍ତାର ।
କାଉଟା ଥିଲା ଏକା ବଡ଼ ଚତୁର
ଭାବିଲା ବାଘକୁ ଦେବି ପାନେ ଏଥର ।

ନେଇଗଲା ତାକୁ ସିଏ ନନ୍ଦନ କାନନ
ଚାଲ କରିବା ସେଠାରେ ହରିଣ ହନନ ।
ବାଘମାମୁ ଥିଲା ଯେଣୁ ନିପଟ ବୋକା
ବୁଢ଼ା ନୁହେଁ ଯୁବା ସିଏ ନଥିଲା ଶଙ୍କା ।

ନନ୍ଦନ କାନନ ଯାଇ ଦେଖିଲା ସାରା
ହରିଣ, କୁଟୁରା କରୁଛନ୍ତି ଯାତରା ।
କହିଲା କୁଆ, "ମାମୁ! ଦେଖିବ ଆସ
କେତେ କିସମର ଜନ୍ତୁ କରନ୍ତି ବାସ ।

ଏଠି ଅଛନ୍ତି ତୁମ ପରି ଅନେକ ବାଘ
ଖାଉଛନ୍ତି ପଶୁପକ୍ଷୀ ତିଆରି ଶାଗ ।"
ତାକୁ ଶୁଣାଇ କୁଆ କହିଲା– ମାମୁ
ତାଙ୍କ ସଙ୍ଗେ କଥା ହୁଅ ହୋଇବ ଛାମୁ ।

ବାଘଙ୍କୁ ଦେଖି ମାମୁ ମାରିଲା ଡିଆଁ
ତାକୁ ଦେଖି କର୍ମଚାରୀ ହେଲେ ଛାନିଆଁ ।
ମାମୁ ପଡ଼ିଗଲା ଆହା ବାଡ଼ ଭିତରେ
ବାହାରି ପାରିଲା ନାହିଁ ରଡ଼େ କାତରେ ।

ନନ୍ଦନ କାନନ ବାଘ କହେ, "ପରବୁଦ୍ଧିଆ
ଜଙ୍ଗଲ ଛାଡ଼ି ସହରକୁ ଆସିଲୁ କିଆଁ ?
ଭଲ କଲୁ ହେଲୁ ଏବେ ଆମ କୁଣିଆଁ ।"

କାଉ କହେ ହସି ହସି– ମାମୁ ଶୁଣିବ କଥା
ମାମୁ ମୁଁ ଯାଉଛି ତୁମେ ସହରେ ଥା ।"

*ଆଲୋକ ନଗର, ବଲାଙ୍ଗୀର-୨*

---

ଅଛି-ନାହିଁର ଉତ୍ତର-- ୧) ଚଢ଼େଇର ସଂଖ୍ୟା ଭିନ୍ନ, ୨) ଫୁଲର କେଶର ଭିନ୍ନ, ୩) ଡାହାଣହାତ ଆଙ୍ଗୁଠି ଅସମାନ, ୪) ସୂର୍ଯ୍ୟଙ୍କ କିରଣରେଖା ଅସମାନ, ୫) ଜୋତା ରଙ୍ଗ ଭିନ୍ନ, ୬) ପାଟିର ଭଙ୍ଗୀ ଭିନ୍ନ, ୭) ଘାସପତ୍ର ସଂଖ୍ୟା ଅସମାନ ।

# ✻✻ ୨୦୧୫ ମସିହାର ସମ୍ମାନିତ କୃତୀ ଲେଖକବୃନ୍ଦ ✻✻



## ଶ୍ରୀଯୁକ୍ତ ନାମଯଜ୍ଞ ମିଶ୍ର

ବଲାଙ୍ଗୀର ଜିଲାର କୁରୁଲ ଗ୍ରାମପଞ୍ଚାୟତର କଙ୍କରିଆ ଗ୍ରାମରେ ତା ୨୬.୩.୧୯୪୫ରେ ଜନ୍ମ। ପିତା - ⁄ କ୍ଷିରୋଦ ମିଶ୍ର, ମାତା - ଆଶାମତୀ ଦେବୀ। ବର୍ତ୍ତମାନ ଠିକଣା - ବରପାଲିପଡ଼ା, ବଲାଙ୍ଗୀର। ଶିକ୍ଷାଗତ ଯୋଗ୍ୟତା - ଏମ୍. ଏ., ଏମ୍. ଇଡି., ସାହିତ୍ୟ ଶାସ୍ତ୍ରୀ, ସାହିତ୍ୟ ରତ୍ନ।

ଆସିବାସୀ ଓ ହରିଜନ କଲ୍ୟାଣ ବିଭାଗରେ ଶିକ୍ଷାଦାନ ତଥା ଶିକ୍ଷକ, ପ୍ରଧାନ ଶିକ୍ଷକ ଓ ଜିଲ୍ଲାଧୀଶ ପଦବୀ ମଣ୍ଡନ କରି ସମ୍ପ୍ରତି ୦୧.୦୪.୨୦୦୩ ମସିହାରୁ ଅବସରପ୍ରାପ୍ତ। ବର୍ତ୍ତମାନ ଅଖିଳ ଭାରତୀୟ ଶିଶୁ ସାହିତ୍ୟ ସମ୍ମେଳନ, ଅଲ୍‌ଇଣ୍ଡିଆ ଜୁଭେନାଇଲ ଲିଟରାରୀ କନ୍‌ଫରେନ୍ସ ଓ ଓଡ଼ିଶା ଶିଶୁ ସାହିତ୍ୟ ସମ୍ମେଳନର ସକ୍ରିୟ ସଦସ୍ୟ ଅଛନ୍ତି।

**ପ୍ରକାଶିତ ପୁସ୍ତକ-** ଶିକ୍ଷକ(କାବ୍ୟ), ନିରବଲମ୍ବ(ଗଳ୍ପ), ଚାନ୍ଦଦେଖା, ନବାନ୍ନ ପୁରାଣ, ଚରିତ କଥାସରିତ ୧ମ ଓ ୨ୟ ଭାଗ (ଶିଶୁ-କିଶୋର ଗଳ୍ପ)। ଏତଦ୍‌ବ୍ୟତୀତ ଆକାଶବାଣୀ ସମ୍ବଲପୁରରୁ କୋଶଲୀ ଗୀତ ଡବାକା ପାଏନ୍, ବେତାର ନାଟିକା ବାଜିରାଉତ ଓ ଜୟପୁର କେନ୍ଦ୍ରରୁ ଝିଅ ଦୁନିଆ ବେତାର ନାଟିକା ପ୍ରସାରିତ। ତତ୍‌ସହିତ ତାଙ୍କର ଲେଖା ଧରିତ୍ରୀ, ରାଷ୍ଟ୍ରଦୀପ, ସମ୍ବାଦ, ହୀରାଖଣ୍ଡ, ସଂସାର, ମନପବନ ଆଦି ଅନେକ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଆଦୃତି ଲାଭ କରିଛି। ଅନେକ ମଧ୍ୟ ଅପ୍ରକାଶିତ ହୋଇ ରହିଛି।

**ସମ୍ମାନ ଓ ପୁରସ୍କାର-** ପ୍ରଜାତନ୍ତ୍ର ବିଷୁବ ମିଳନ ପୁରସ୍କାର, ରାଷ୍ଟ୍ରଦୀପ ପୁରସ୍କାର, ବିଶିଷ୍ଟ ଶିଶୁ ସାହିତ୍ୟିକ ସମ୍ମାନ, ଅଖିଳ ଭାରତୀୟ ଶିଶୁ ସାହିତ୍ୟ ସମ୍ମେଳନ ଝାନସୀ; ନିର୍ଝରଣୀ ସମ୍ମାନ, କଣ୍ଟାବାଞ୍ଜି ଇତ୍ୟାଦିରୁ ଅନେକ ପୁରସ୍କାର ଏବଂ ଧନୁଯାତ୍ରା ମହୋତ୍ସବ ସମିତି, ବରଗଡ଼-୨୦୧୪; ଶିଶୁ ସାହିତ୍ୟ ସଂସଦ, ବରଗଡ଼ ଓ ବଲାଙ୍ଗୀରରୁ ଅକ୍ଷର ସମ୍ମାନ- ୨୦୧୫, ଇତ୍ୟାଦି ଅନେକ ସମ୍ମାନରେ ଭୂଷିତ। ଅଦ୍ୟାବଧି ତାଙ୍କର ଲେଖନୀ ଚଳଚଞ୍ଚଳ।

'ଶିଶୁର ବିକାଶରେ ରାଷ୍ଟ୍ରର ବିକାଶ' ଏବଂ ଆର୍ଯ୍ୟ ସଂସ୍କୃତି ହିଁ ବିଶ୍ୱ ସଂସ୍କୃତିର ଜନ୍ମଦାତା' - ଏହାହିଁ ତାଙ୍କର ମତ, ଯାହା ତାଙ୍କର ପ୍ରତିଟି ରଚନାରେ ପ୍ରତିଫଳିତ।

## ଶ୍ରୀଯୁକ୍ତ କମଳାକାନ୍ତ ଜେନା



ବାଲେଶ୍ୱରର ଗଣେଶ୍ୱରପୁର, ଜାନୁଗଞ୍ଜ ଠାରେ ୧୯୭୧, ଏପ୍ରିଲ ୨୫ ତାରିଖରେ ଜନ୍ମ। ପିତା - ⁄ ଭାଗବତ ଜେନା, ମାତା - ଶ୍ରୀମତୀ ଶାରଳା ଜେନା।

**ଶିକ୍ଷାଗତ ଯୋଗ୍ୟତା-** ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍. ଏସ୍‌ସି. ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଲାଭ।

**ବର୍ତ୍ତମାନର ଠିକଣା-** ପଦାର୍ଥ ବିଜ୍ଞାନ ଅଧ୍ୟାପକ, ଭଦ୍ରକ ସ୍ୱୟଂଶାସିତ ମହାବିଦ୍ୟାଳୟ, ଭଦ୍ରକ ।

**କୃତି-** ୧୯୮୩ରେ ସପ୍ତମ ବୋର୍ଡ଼ ପରୀକ୍ଷାରେ ଅବିଭକ୍ତ ବାଲେଶ୍ୱର ଜିଲାରେ ଶ୍ରେଷ୍ଠ ୨ୟ ସ୍ଥାନ ହାସଲ। ଗପରେ ଗପରେ ବିଜ୍ଞାନ ପୁସ୍ତକ ପାଇଁ ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର, ୨୦୦୭ରେ ପ୍ରକୃତିବନ୍ଧୁ ପୁରସ୍କାର, ବିଜ୍ଞାନ ପ୍ରଚାର ସମିତି ସମ୍ମାନ (୨୦୦୫ ଓ ୨୦୦୭), ସରଗ ଶଶି ସମ୍ମାନ, ଗଙ୍ଗାଧର ଶିଶୁ ସାହିତ୍ୟ ସମ୍ମାନ ଇତ୍ୟାଦି ଅନେକ ସମ୍ମାନରେ ସେ ଭୂଷିତ।

**ପ୍ରକାଶିତ ପୁସ୍ତକ-** ବିଜୁଳିର ଖେଳ, ଗପରେ ଗପରେ ବିଜ୍ଞାନ ଆଦି ଅନେକ ବିଜ୍ଞାନ ପୁସ୍ତକ ତାଙ୍କର ପ୍ରକାଶିତ ହୋଇ ବିଦ୍ୟାଳୟ ଓ ମହାବିଦ୍ୟାଳୟ ଦ୍ୱାରା ସ୍ୱୀକୃତିପ୍ରାପ୍ତ ଓ ଆଦୃତ। ଦୂରଦର୍ଶନରେ ୫ଟି ଜ୍ଞାନବିଜ୍ଞାନ କାର୍ଯ୍ୟକ୍ରମ ପ୍ରସାରିତ ଓ ଆକାଶବାଣୀରେ ୪୦ରୁ ଅଧିକ ବିଜ୍ଞାନ ପ୍ରବନ୍ଧ ପ୍ରସାରିତ।

## ଶ୍ରୀଯୁକ୍ତ ହିମାଂଶୁ ଶେଖର ଫତେସିଂହ

୧୯୭୨ ମସିହା ଫେବୃୟାରୀ ୨୦ ତାରିଖରେ ଖୋର୍ଦ୍ଧା ଜିଲାର ଜଙ୍କିଆ ଥାନା ଅନ୍ତର୍ଗତ ବାଲିଗାଡ଼ିଆଠାରେ ଜନ୍ମ । ପିତା- ୰ ରାମଚନ୍ଦ୍ର ମୋଦି, ମାତା- ଶ୍ରୀମତୀ ଶକୁନ୍ତଳା ଫତେସିଂହ ।

**ଶିକ୍ଷାଗତ ଯୋଗ୍ୟତା-** ସ୍ନାତକୋତ୍ତର ଡିଗ୍ରୀ, ସିକିମ୍ ମଣିପାଲ ବିଶ୍ୱବିଦ୍ୟାଳୟ ।

**ବୃତ୍ତି-** ଶିକ୍ଷାଦାନ, ଇବ୍ ଥର୍ମାଲ ହାଇସ୍କୁଲ

**ବର୍ତ୍ତମାନ ଠିକଣା-** ଅଭ୍ୟର୍ଥନା, ଇବ୍ ଥର୍ମାଲ, ଝାରସୁଗୁଡ଼ା

ଗତ ୨୦ ବର୍ଷରୁ ଊର୍ଦ୍ଧ୍ୱକାଳ ସେ ଶିକ୍ଷାଦାନ ବୃତ୍ତି ସହିତ ବିଜ୍ଞାନ-ସାହିତ୍ୟ ରଚନାରେ ନିମଗ୍ନ ଅଛନ୍ତି । ୨୦୦୮ ମସିହାରେ ସେ ମିଡିଆ-୨୧ ବୃତ୍ତି ପାଇ ସ୍ୱିଜରଲ୍ୟାଣ୍ଡର ଜେନିଭାଠାରେ ଆୟୋଜିତ ଜଳବାୟୁ କର୍ମଶାଳାରେ ଅଂଶଗ୍ରହଣ କରିଥିଲେ ।

**ପ୍ରକାଶିତ ପୁସ୍ତକ-** ପାଣିପାଗ ବିଜ୍ଞାନ, ବିଖ୍ୟାତ ଭାରତୀୟ ଗଣିତଜ୍ଞ, ଆମ ଓଜୋନ୍ ସ୍ତର, ରୋଗବାହକ କୀଟପତଙ୍ଗ, ଆମ ଜହ୍ନରାଇଜ ଇତ୍ୟାଦି ।

ତାଙ୍କର ୭୦୦ରୁ ଊର୍ଦ୍ଧ୍ୱ ବିଜ୍ଞାନଭିତ୍ତିକ ଗଳ୍ପ ଓ ପ୍ରବନ୍ଧ ଓଡ଼ିଶାର ପ୍ରମୁଖ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଆଦୃତି ଲାଭ କରିଛି । ଏତଦ୍‌ବ୍ୟତୀତ ତାଙ୍କ ରଚିତ ୪୦ରୁ ଊର୍ଦ୍ଧ୍ୱ ବିଜ୍ଞାନସମ୍ପର୍କିତ ଲେଖା କାର୍ଯ୍ୟକ୍ରମ ଆକାଶବାଣୀ କଟକ ଓ ସମ୍ବଲପୁରରୁ ପ୍ରସାରିତ ହୋଇଛି । ସେ ଭାରତୀୟ ଲେଖକ ସଂଘ, ଜାତୀୟ ଓ ରାଜ୍ୟସ୍ତରୀୟ ୧୬ଟି ବିଜ୍ଞାନ ତଥା ସାହିତ୍ୟ ସମ୍ପର୍କିତ ଅନୁଷ୍ଠାନର ଆଜୀବନ ସଦସ୍ୟ ଅଛନ୍ତି । ବିଜ୍ଞାନ ଶିକ୍ଷା ଓ ବିଜ୍ଞାନ ସଞ୍ଚାର ସମ୍ବନ୍ଧୀୟ ବିଭିନ୍ନ ଜାତୀୟ ଓ ଅନ୍ତର୍ଜାତୀୟ ସମ୍ମିଳନୀ ଓ ସମ୍ମାନରେ ସକ୍ରିୟ ଅଂଶଗ୍ରହଣ କରିବା ସହିତ ୧୬ଟି ଗବେଷଣାଭିତ୍ତିକ ପ୍ରବନ୍ଧ ଉପସ୍ଥାପନ କରିଛନ୍ତି ।

**ସମ୍ମାନ-** ମାଣିକ୍ୟ ବିଶ୍ୱନାଥ ସ୍ମୃତି ସମ୍ମାନ, ପ୍ରକୃତିବନ୍ଧୁ ପୁରସ୍କାର, ପ୍ରଫେସର ଗୋପୀନାଥ ମହାନ୍ତି ପ୍ରତିଭା ପୁରସ୍କାର, ଇସ୍ମା ସମ୍ମାନ ଓ ସୁକୁମାର ସୁନନ୍ଦା ଜନପ୍ରିୟ ବିଜ୍ଞାନ ପୁରସ୍କାର ଆଦି ସମ୍ମାନରେ ସେ ବିଭୂଷିତ ।

---

## ବିଦେଶ ଖବର

୨୪ । ୯-- ମୁସଲମାନମାନଙ୍କର ପବିତ୍ର ପୀଠ ସାଉଦି ଆରବର ମକ୍କାରେ ହଜ୍ ତୀର୍ଥଯାତ୍ରୀଙ୍କ ମଧ୍ୟରେ ଦଳାଚକଟା ଘଟି ୭୫୦ରୁ ଅଧିକ ପ୍ରାଣ ହରାଇବା ସହିତ ଏକହଜାରରୁ ଅଧିକ ଆହତ ।

୨୯ । ୯-- ନେପାଳରେ ନୂତନ ସଂବିଧାନ ଲାଗୁ ହେବା ପରେ କେବୁଲ୍ ଟିଭି ଆସୋସିଏସନ୍ ପକ୍ଷରୁ ୪୨ଟି ଭାରତୀୟ ଚ୍ୟାନେଲ୍ ଉପରେ କଟକଣା ଲାଗୁ ।

୩୦ । ୯ -- ଫୁଟ୍‌ବଲ୍‌ର ସର୍ବୋଚ୍ଚ ସଂସ୍ଥା 'ଫିଫା' ପକ୍ଷରୁ ଫିଫାର ପୂର୍ବତନ ଉପସଭାପତି ଜ୍ୟାକ୍ ୱାର୍ଣ୍ଣର ଆଜୀବନ ବାସନ୍ଦ ଘୋଷିତ ।

-- ସିରିଆ, ଫ୍ରାନସ୍, କୁଏଟ୍ ଓ ଟ୍ୟୁନିସିଆରେ ଆତଙ୍କବାଦୀ ଆକ୍ରମଣରେ ୨୦୦ ମୃତ ।

୧ । ୧୦--ଚୀନ୍‌ର ଦକ୍ଷିଣ ଭାଗରେ ସିରିୟଲ୍, ପାର୍ଶଲ୍ ବୋମା ବିସ୍ଫୋରଣ ।

୨ । ୧୦-- ପୂର୍ବ ଆଫଗାନିସ୍ତାନରେ ଆମେରିକାର ଏକ ପରିବହନ ବିମାନକୁ ଗୁଳିକରି ଖସାଇ ଦେବାରୁ ୧୧ ଜଣ ମୃତ ।

୩ । ୧୦-- ଗୁଏଟ୍‌ମାଲାଠାରେ ପାହାଡ଼ ଧସିଯିବାରୁ ଏକ ଗାଁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ।

୭ । ୧୦-- ସିରିଆରେ ଆଇ.ଏସ୍.ଆଇ.ଏସ୍ ଆତଙ୍କବାଦୀଙ୍କ ଉପରେ ରୁଷର ୨୬ଟି କ୍ଷେପଣାସ୍ତ୍ର ମାଡ଼ ।

୧୦ । ୧୦-- ତୁର୍କୀର ରାଜଧାନୀ ଅଙ୍କାରାରେ ଆତ୍ମଘାତୀ ବିସ୍ଫୋରଣରେ ୯୦ ଜଣଙ୍କର ମୃତ୍ୟୁ ଓ ୧୮୦ ଜଣ ଆହତ ।

୧୦ ।୧୦-- ଖଡ୍ଗପ୍ରସାଦ ଶର୍ମା ଓଲି ନେପାଳର ନୂତନ ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତ ।

## ଶବ୍ଦଧନ୍ଦା ନଭେମ୍ବର-୨୦୧୫

ଶ୍ରୀ ପ୍ରିୟଦର୍ଶୀ ଶତପଥୀ

**୧ ।** କାଗଜରେ ବା କାର୍ଡ୍‌ରେ ଘର କାଟି ଉତ୍ତର ଲେଖନ୍ତୁ ।
**୨ ।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
**୩ ।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
**୪ ।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
**୫ ।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
**୬ ।** ଉତ୍ତର ପହଞ୍ଚିବାର ଶେଷ ତାରିଖ **୨୨ ।୧୧ ।୧୫**
**୭ ।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | | ୨ | ୩ | | ୪ |
| | ★ | ★ | | | ★ | |
| ୫ | | ୬ | | ୭ | | |
| ୮ | | | ★ | ★ | ୯ | ୧୦ |
| | ★ | ୧୧ | | | | |
| | ★ | | ★ | ୧୨ | | |
| ୧୩ | | | ★ | ୧୪ | | |

**ସୂଚନା**

**ବାମରୁ ଡାହାଣ--** ୧ । ବଞ୍ଚିରହିବାର ଇଚ୍ଛା (୪), ୩ । ଶିବ (୩), ୫ । ଜମିର କ୍ଷେତ୍ରଫଳ (୩), ୭ । ଉଡ଼ାପୋକ (୩), ୮ । ଦଳର ମୁଖ୍ୟ କାର୍ଯଚଦାର (୩), ୯ । ଈଶ୍ୱର (୨), ୧୧ । ଅଗ୍ରୀମ ଅର୍ଥ (୩), ୧୨ । ନିନ୍ଦା (୩), ୧୩ । ସରଳବର୍ଗୀୟ ଅରଣ୍ୟ (୩), ୧୪ । ଶେଷ (୩) ।

**ଉପରୁ ତଳ--** ୧ । ଅଳି (୩), ୨ । ଅର୍ଦ୍ଧବାର୍ଷିକୀ (୩), ୩ । ଉପାସନା ମନ୍ଦିର (୨), ୪ । ରଥ (୩), ୬ । ପବନ (୨), ୮ । ମର୍ମଭେଦୀ (୪), ୯ । ଅଶୁଭ ଘଟଣା (୨), ୧୦ । ତରବାରି ବିଶେଷ (୩), ୧୧ । ଆରକ୍ଷୀ (୩), ୧୨ । ସୁଗନ୍ଧ ତୈଳବିଶେଷ (୨) ।

-- *ବାଗଲପୁର, ଜଗତ୍‌ସିଂହପୁର - ୭୫୪୧୦୨*

---

**ଅକ୍ଟୋବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ହଳଦିବସନ୍ତ, ୭ । ବାଜରା, ୮ । କାଜି, ୯ । କରାଗତ, ୧୧ । କଙ୍କର, ୧୨ । ଅପାର, ୧୩ । ଇନ୍ଦୁମତୀ, ୧୪ । ତଣ୍ଡ, ୧୫ । ସାମିଆନା, ୧୮ । ସାରସ ।

**ଉପରୁ ତଳ--** ୧ । ହସ୍ତିପକ, ୨ । ଦିବାକର, ୩ । ବଜରା, ୪ । ସରାଗ, ୫ । ବାଜିକର, ୬ । ପଲଙ୍କ, ୧୦ । ତପାତ୍ୟୟ, ୧୨ । ଅନାରସ, ୧୩ । ଇସାରା, ୧୭ । ରୁଖା ।

---

ଠିକ୍ ଉତ୍ତରଦାତାଙ୍କ ନାମ-- **ଇପ୍ସିତା ମିଶ୍ର,** ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନ, ଚମ୍ପୁଆ, କେନ୍ଦୁଝର; **ସୌମ୍ୟରଞ୍ଜନ ନାୟକ,** ବାଟିଯୋଡା, ଜେନାପୁର; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର ।

ବିଳମ୍ବରେ ଆସିଥିବା ଉତ୍ତର- **ନିଶିକାନ୍ତ ବେହେରା ।**

**ଭୁଲ ସଂଶୋଧନ-** ଗତମାସ ଶବ୍ଦଧନ୍ଦାରେ ବାମରୁ ଡାହାଣ ୧୪ ନମ୍ବରରେ କୌଣସି ଶବ୍ଦ ରହିବ ନାହିଁ ଏବଂ ବାମରୁ ଡାହାଣ ନମ୍ବରରେ କରାଗତ ଅର୍ଥ- 'ଯାହା ହାତକୁ ଆସିଯାଇଛି', ମାତ୍ର ତାହାର ଅର୍ଥ 'କ୍ଷମତା' ଲେଖାଯାଇଛି । ଏହି ତ୍ରୁଟି ପାଇଁ ଆମେ ଦୁଃଖିତ; ତଥାପି ଯେଉଁମାନେ ଏହାକୁ ସଂଶୋଧନ କରି ପଠାଇଛନ୍ତି, ସେମାନଙ୍କ ପ୍ରତି ଆମେ କୃତଜ୍ଞ ।



## ଓଡ଼ିଶା ଖବର

୨୫ ।୯-- ବ୍ଲକ୍ ଗ୍ରାଣ୍ଟ୍ ପାଇ ନ ଥିବା ୩୯୯ ହାଇସ୍କୁଲ୍ ଅନୁଦାନ ପାଇବା ପାଇଁ ଯୋଗ୍ୟ ବିବେଚିତ ଏବଂ ୩୯ଟି ସଂସ୍କୃତ ଟୋଲ୍‌କୁ ମଧ୍ୟ ଏଥିସହିତ ପରିସରଭୁକ୍ତ କରାଯିବ ।

୩। ୧୦-- ସାଧାରଣ ନାଗରିକ ଏତଲା ପଞ୍ଜିକରଣ ପାଇଁ କ୍ରିମିନାଲ୍ ଟ୍ରାକିଂ ନେଟ୍‌ୱାର୍କ ଏଣ୍ଡ ସିଷ୍ଟମ୍ ବ୍ୟବସ୍ଥା ମାଧ୍ୟମରେ ସିଟିଜେନ୍ ପୋର୍ଟାଲ୍ ସେବା ଉଦ୍‌ଘାଟିତ ।

୧୬ ।୧୦-- ଭୁବନେଶ୍ୱର ମହାବିଦ୍ୟାଳୟ ଓ ବିଶ୍ୱ-ବିଦ୍ୟାଳୟର ନବନିର୍ବାଚିତ ଛାତ୍ରଛାତ୍ରୀଙ୍କ ଶୋଭାଯାତ୍ରାରେ ଅଗ୍ନିକାଣ୍ଡ ଯୋଗୁଁ ୧୧ଜଣ ଛାତ୍ରଛାତ୍ରୀ ଆହତ ।

୨୭ । ୯-- ଭୁବନେଶ୍ୱରସ୍ଥ 'ନାଇସର୍'ର ଆସୋସିଏଟ୍ ପ୍ରଫେସର ଡକ୍ଟର ବେଦାଙ୍ଗ ଦାସ ମହାନ୍ତି 'ଶାନ୍ତିସ୍ୱରୂପ ଭଟ୍ଟନାଗର ପୁରସ୍କାର' ପାଇବା ପାଇଁ ମନୋନୀତ ।

## ଭାରତ ଖବର

୨୩ । ୯-- ଇସ୍ରାଏଲ୍‌ଠାରୁ ଭାରତ ୧୦ଟି ଡ୍ରୋନ୍ କ୍ରୟ କରିବ ଏବଂ ଆମେରିକା ବିମାନ କମ୍ପାନୀ ବୋଇଙ୍ଗ୍‌ଠାରୁ ୨୨ଟି ଆପୋଚେ ହେଲିକପ୍ଟର ଓ ୧୫ଟି ସିନୁକ୍ ହେଲିକପ୍ଟର କିଣାଯିବ ।

୨୫ । ୯-- ଝିଅକୁ ବାଲ୍ୟବିବାହ ଦେଉଥିବା ମୁସଲମାନ ପରିବାରଙ୍କୁ ଦୋଷୀ ସାବ୍ୟସ୍ତ କରାଯିବ ଏବଂ ଏପରି ବିବାହକୁ ପ୍ରୋତ୍ସାହନ ଦେଉଥିବା ବ୍ୟକ୍ତିଙ୍କ ବିରୋଧରେ ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ଗୁଜୁରାଟ୍ ହାଇକୋର୍ଟର ସ୍ପଷ୍ଟୀକରଣ ।

୨୬ । ୯-- ଗ୍ୱାଙ୍ଗ୍‌ଝୋଠାରେ ଚାଲିଥିବା ଓପନ୍ ଟେନିସ୍ ଟୁର୍ଣ୍ଣାମେଣ୍ଟରେ ସାନିଆ ମିର୍ଜା ଓ ତାଙ୍କର ସ୍ୱିଜରଲାଣ୍ଡ ଯୋଡ଼ି ମାର୍ଟିନା ହିଙ୍ଗିସ୍‌ଙ୍କର ମହିଳା ଡବଲସ୍ ଆଖ୍ୟା ଅର୍ଜନ ।

୨୮ । ୯-- ଭାରତର ପଙ୍କଜ ଆଡଭାନୀଙ୍କର ଅଷ୍ଟ୍ରେଲିଆର ଆଡେଲେଡ୍‌ଠାରେ ଚାଲିଥିବା ଆଇ.ବି.ଏସ୍.ଏଫ. ବିଶ୍ୱ ବିଲିୟାର୍ଡ ଚମ୍ପିୟାନ୍‌ସିପ୍‌ରେ ଚମ୍ପିୟାନ୍ ଆଖ୍ୟା ହାସଲ ।

୨୯ ।୯-- କୋଲ୍ ଆବଣ୍ଟନ ଦୁର୍ନୀତିରେ ପୂର୍ବତନ ପ୍ରଧାନମନ୍ତ୍ରୀ ମନମୋହନ ସିଂଙ୍କର ସମ୍ପୃକ୍ତି ନେଇ କୌଣସି ପ୍ରମାଣ ନ ଥିବା ସିବିଆଇର ଘୋଷଣା ।

-- ଆମ୍ ଆଦ୍‌ମୀ ପାର୍ଟି (ଆପ୍) ବିଧାୟକ ସୋମନାଥ ଭାରତୀଙ୍କର ହାଇକୋର୍ଟରେ ଆତ୍ମ ସମର୍ପଣ ।

୩୦ ।୯-- ୨୦୧୬ ସୁଦ୍ଧା ଭାରତର ୧୦୦ଟି ବ୍ୟସ୍ତବହୁଳ ଷ୍ଟେସନ୍‌କୁ ବ୍ରଡ୍‌ବ୍ୟାଣ୍ଡ୍ ୱାଇ.ଫାଇ. ଯୁକ୍ତ କରାଯିବା ପାଇଁ ଗୁଗୁଲ୍ କମ୍ପାନୀର ଘୋଷଣା ।

୩୦ ।୯-- ୭ ।୧୧ ମୁମ୍ବାଇ ଟ୍ରେନ୍ ବିସ୍ଫୋରଣ ମାମଲାର ରାୟରେ ୫ଜଣଙ୍କୁ ଫାଶୀ ଓ ୭ଜଣଙ୍କୁ ଆଜୀବନ କାରାଦଣ୍ଡ ଆଦେଶ ।

୧ ।୧୦-- ଦିଲ୍ଲୀଠାରେ ଚାଲିଥିବା ୮ମ ଏସୀୟ ଏୟାର୍‌ଗନ୍ ସୁଟିଂର ଶେଷ ଦିନରେ ଭାରତ ପାଇଁ ହିନା ସିଦ୍ଧୁଙ୍କର ସ୍ୱର୍ଣ୍ଣ ପଦକ ହାସଲ ।

୫ । ୧୦-- ସର୍ବଭାରତୀୟ ଟ୍ରକ୍ ଧର୍ମଘଟ ୫ ଦିନ ପରେ ପ୍ରତ୍ୟାହୃତ ।

୫ । ୧୦-- ବାରବାଟୀ ଷ୍ଟାଡିୟମ୍‌ଠାରେ ଭାରତ ଓ ଦକ୍ଷିଣ ଆଫ୍ରିକା ଆନ୍ତର୍ଜାତିକ କ୍ରିକେଟ୍ ମ୍ୟାଚ୍ ଟ୍ୱେଣ୍ଟି ଟ୍ୱେଣ୍ଟିରେ ଭାରତକୁ ୬ ୱିକେଟ୍‌ରେ ପରାସ୍ତ କରି ଦକ୍ଷିଣ ଆଫ୍ରିକାର ବିଜୟ ହାସଲ ।

୬ । ୧୦-- ସ୍ୱଦେଶୀ ଜ୍ଞାନ କୌଶଳରେ ନିର୍ମିତ ଯୁଦ୍ଧ ଜାହାଜ ଆଇ.ଏନ୍.ଏସ୍ 'ଅସ୍ତ୍ରଧାରିଣୀ'ର ଜଳାବତରଣ ସଫଳତାର ସହ ସମାପ୍ତ ।

୮ । ୧୦-- ବଲିଉଡ୍‌ର ଲବ୍ଧପ୍ରତିଷ୍ଠ ସଂଗୀତ ନିର୍ଦ୍ଦେଶକ ରବୀନ୍ଦ୍ର ଜୈନ୍‌ଙ୍କର ୭୧ ବର୍ଷରେ ପରଲୋକ । ରାମ୍ ତେରି ଗଙ୍ଗା ମୈଲୀ, ଗୀତ୍ ଗାତା ଚଲ୍ ଇତ୍ୟାଦି ଖ୍ୟାତିଲାଭ କରିଥିବା ଚଳଚ୍ଚିତ୍ରରେ ସେ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ।

୧୦ ।୧୦-- ଆନ୍ଧ୍ରପ୍ରଦେଶର ପୂର୍ବ ଗୋଦାବରୀ ଜିଲ୍ଲାରେ ଥିବା ସହର ରାଜମୁନ୍ଦ୍ରୀର ପରିବର୍ତ୍ତିତ ନାମ ହେଲା ରାଜମହେନ୍ଦ୍ରାବରମ୍ ।

୧୬ । ୧୦-- ସୁପ୍ରିମ୍ କୋର୍ଟ ଓ ହାଇକୋର୍ଟର ବିଚାରପତି ନିଯୁକ୍ତି ପାଇଁ ଗଠିତ ଜାତୀୟ ନ୍ୟାୟିକ ନିଯୁକ୍ତି ଆୟୋଗ (ଏନ୍‌ଜେଏସି) ଆଇନ୍‌କୁ ସୁପ୍ରିମ୍‌କୋର୍ଟ ଦ୍ୱାରା ଅସମ୍ବିଧାନିକ ଘୋଷଣା ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597